# ଭାରତର ଟ୍ରେଡ୍ ୟୁନିୟନ ଆନ୍ଦୋଳନ

# ଅତୀତ
# ବର୍ତ୍ତମାନ
# ଭବିଷ୍ୟତ

ଏମ୍.କେ. ପାଣ୍ଡେ

ସି.ଆଇ.ଟି.ୟୁ. ପ୍ରକାଶନ

# ଭାରତର ଟ୍ରେଡ୍ ୟୁନିୟନ ଆନ୍ଦୋଳନ

## ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ

(୨୦୦୯, ସେପ୍ଟେମ୍ବର ୨୪-୨୫ : ମୁମ୍ବାଇ ବିଶ୍ୱ ବିଦ୍ୟାଳୟରେ ଅନୁଷ୍ଠିତ ଏକ ରାଷ୍ଟ୍ରୀୟ ଆଲୋଚନା ଚକ୍ରରେ ପ୍ରଦତ୍ତ ଡଃ ଏମ୍.କେ. ପାଣ୍ଡେଙ୍କ ଉଦ୍‌ବୋଧନ)

ସମ୍ମାନୀୟ ସଭାପତି ଏବଂ ମୋର ଭାଇ ଓ ଭଉଣୀମାନେ,

ମୁମ୍ବାଇ ବିଶ୍ୱ ବିଦ୍ୟାଳୟ ପକ୍ଷରୁ ଆଜିର ଏହି ସେମିନାରରେ ମୁଁ ଆପଣମାନଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଇବା ସହ, ବିଷୟଟି ସମ୍ପର୍କରେ ମୋର ମତାମତ ଉପସ୍ଥାପନ ପାଇଁ ସୁଯୋଗ ମିଳିଥିବାରୁ ଧନ୍ୟବାଦ ଜଣାଉଛି। ଆଜି ଦିନରେ, ଆମମାନଙ୍କ ସାମାଜିକ ଜୀବନ ପାଇଁ ଆଲୋଚ୍ୟ ବିଷୟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ।

ଭାରତବର୍ଷର ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଆଜି ଏକ ଦୋଛକିରେ ଦଣ୍ଡାୟମାନ। ଶ୍ରମିକଶ୍ରେଣୀ ଆମ ସମାଜର ଏକ ବଡ ସଂଗଠିତ ଶକ୍ତି କିନ୍ତୁ ପରିତାପର ବିଷୟ ଏହା ବହୁ ଭାଗରେ ବିଭକ୍ତ ହୋଇଥିବା କାରଣରୁ ଏହାର ଯୌଥ ଦର କଷାକଷି ଶକ୍ତି ହରେଇ ବସିଛି। ଜଗତିକରଣ ଯୁଗ ଏହା ସାମନାରେ ଆହ୍ୱାନ ସଦୃଶ ଦଣ୍ଡାୟମାନ। ଏଣୁ ପ୍ରଶ୍ନ ଉଠୁଛି, ଆମ ଦେଶର ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଏପରି ଅହ୍ୱାନକୁ କିପରିଭାବେ ମୁକାବିଲା କରିବ। ବିଷୟଟି କୌଣସିମତେ ସଂକ୍ଷିପ୍ତରେ ଉପସ୍ଥାପନ କରାଯାଇ ପାରିବନାହିଁ, ତଥାପି ଏହାକୁ ମୁଁ ଏକ ସାମଗ୍ରୀକ ପୃଷ୍ଠଭୂମିରେ ଆଲୋଚନା କରିବି।

# ପ୍ରଥମ ଭାଗ

## ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଅତୀତ

ଆଧୁନିକ ଶିଳ୍ପ ଆଧୁନିକ ଶ୍ରମିକଶ୍ରେଣୀର ପ୍ରାରମ୍ଭିକ ଉତ୍ସ ଅଟେ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂଲଣ୍ଡରେ ଘଟିଥିବା ଶିଳ୍ପ ବିପ୍ଳବ, ବହୁଳ ଉତ୍ପାଦନ ପାଇଁ ବଡ ବଜାରର ଆବଶ୍ୟକ କରୁଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ପରମ୍ପରାଗତ ହସ୍ତଶିଳ୍ପ ଏବଂ ଗ୍ରାମ୍ୟ ଅର୍ଥନୀତିକୁ ଧ୍ୱଂସ କରି ଆଧୁନିକ ଶିଳ୍ପକୁ ଗତି ପ୍ରଦାନ କରିଥିଲା ।

ଏଲ୍.ସି.ଏ. ନୋଲେସ ତାଙ୍କ ପୁସ୍ତକ "ଇକୋନୋମିକ୍ ଡେଭଲପମେଣ୍ଟ ଇନ୍ ଓଭରସିଜ୍ ଏମ୍ପାୟାର"ରେ ଲେଖିଥିଲେ "ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଂଲଣ୍ଡ ପାଖରେ ଭାରତର ଗୁରୁତ୍ୱ ଥିଲା ଏହାର ପଶୁ ଚମଡା, ତୈଳ, ରଂଗ, ଝୋଟ ଏବଂ ତୁଳା ଆଦି ପାଇଁ । ଇଲଂଣ୍ଡର ଶିଳ୍ପ ବିପ୍ଳବ ପାଇଁ ଆବଶ୍ୟକକୀୟ କଞ୍ଚାମାଲ ଯୋଗାଣ, ଅପର ପକ୍ଷରେ ବିଲାତର ଲୁହା ଏବଂ କପଡା ନିର୍ମାଣକାରୀମାନଙ୍କ ପାଇଁ ବର୍ଦ୍ଧିତ ବଜାର ସୃଷ୍ଟି କରିବା ଥିଲା ଏହାର ଲକ୍ଷ୍ୟ ।" (ପୃ - ୩୦୫)

ଭାରତରୁ ଖାଦ୍ୟଶସ୍ୟର ବହୁଳ ରପ୍ତାନୀ ଫଳରେ ଦେଶର ଅନେକ ଅଂଶରେ ଲାଗ ଲାଗ କରାଳ ଦୁର୍ଭିକ୍ଷ ଦେଖାଦେଇଥିଲା । ସରକାରୀ ହିସାବ ଅନୁସାରେ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ୭ ଟି ଦୁର୍ଭିକ୍ଷରେ ୧୫ ଲକ୍ଷ ଲୋକ ମରିଥିଲେ, ଯେତେବେଳେ କି ଦ୍ୱିତୀୟାର୍ଦ୍ଧରେ ୨୪ ଟି ଦୁର୍ଭିକ୍ଷରେ ୨ କୋଟିରୁ ଉର୍ଦ୍ଧ୍ୱ ଲୋକ ଅନାହାରରେ ମରିଥିଲେ (ଭାରତୀୟ ଦୁର୍ଭିକ୍ଷ କମିଶନ ରିପୋର୍ଟ - ୧୮୮୦) ।

ଇଷ୍ଟ ଇଣ୍ଡିଆ କମ୍ପାନୀ ଅନୁଭବ କଲା ଭାରତରେ ସେମାନଙ୍କ ଲାଭ ବୃଦ୍ଧି ପାଇଁ କେତେକ ଆଧୁନିକ ଶିଳ୍ପ ବିକାଶର ଆବଶ୍ୟକତା ରହିଛି । କମ୍ପାନୀର କେତେକ ଅଫିସର ଭାରତୀୟମାନଙ୍କୁ ଲୁଣ୍ଠନ କରି ବିପୁଳ ଅର୍ଥନୈତିକ ସମ୍ବଳ

ସଂଗ୍ରହ କରିପାରିଥିଲେ । ରୋଜଗାର ବୃଦ୍ଧି ପାଇଁ ସେମାନେ ଭାରତରେ ପୁଞ୍ଜି ନିବେଶକୁ ଅଗ୍ରାଧିକାର ଦେଲେ ।

ରାଣୀଗଞ୍ଜରେ ୧୮୩୨ ମସିହାରେ ପ୍ରଥମେ କୋଇଲା ଖଣି ଚାଲିଲା । ସେହି ସମୟରେ ଆସାମରେ ଚାହା ଚାଷର ବିକାଶ ଆରମ୍ଭ ହେଲା । ଦୁର୍ଭିକ୍ଷ ଯୋଗୁଁ ସେମାନଙ୍କୁ ଶସ୍ତାରେ ଶ୍ରମିକ ମିଳିଲେ ।

୧୮୫୪ ରେ ବମ୍ବେରେ ପ୍ରଥମ ସୂତାକଳ ଆରମ୍ଭ ହେଲା, ଯେତେବେଳେ କି ପ୍ରଥମ ଝୋଟକଳ ସେହିବର୍ଷ ଉତ୍ପାଦନ ଆରମ୍ଭ କଲା । ୧୮୫୩ ରେ କଲିକତାରୁ ରାଣୀଗଞ୍ଜ ଏବଂ ବମ୍ବେରୁ ଥାନେ ମଧ୍ୟରେ ପ୍ରଥମ ରେଳ ସଂଯୋଗ ସ୍ଥାପନ ହୋଇଥିଲା ।

ଏହିପରିଭାବେ ଆଧୁନିକ ଶ୍ରମିକଶ୍ରେଣୀ ଭାରତରେ ଜନ୍ମଲାଭ କରିଥିଲା । କାର୍ଯ୍ୟ ପରିବେଶ ସେତେବେଳେ ଥିଲା ବାସ୍ତବରେ ଜଘନ୍ୟ । କେତେ ଘଣ୍ଟା କାର୍ଯ୍ୟ ହେବ, ତାହାର କୌଣସି ସମୟ ନିର୍ଘଣ୍ଟ ନଥିଲା । ଶ୍ରମିକଙ୍କର କୌଣସି ଛୁଟି ଦିନ ନଥିଲା । ଆହତ ପାଇଁ କ୍ଷତିପୂରଣ କି ପ୍ରସବକାଳୀନ ଛୁଟି ଆଦି ନଥିଲା । ଶ୍ରମିକ ଏବଂ ତା'ର ପରିବାର ସେମାନଙ୍କ ଦ୍ୱାରା ତିଆରି ଅସ୍ୱାସ୍ଥ୍ୟକର ପରିବେଶରେ କୁଡିଆ ଘରେ ବାସ କରୁଥିଲେ । ସେଠାରେ ସେମାନଙ୍କ ପିଲାମାନଙ୍କର କୌଣସି ଶିକ୍ଷାଦାନର ବ୍ୟବସ୍ଥା ନଥିଲା । ଅବସରକାଳୀନ ସୁବିଧା ସୁଯୋଗର ବିଷୟରେ ସେମାନଙ୍କୁ ଜଣା ନଥିଲା । ଚାହା ବଗିଚା ଶ୍ରମିକମାନେ ଅଫିସରମାନଙ୍କ ଦ୍ୱାରା କୋରଡା ମାଡ ଖାଉଥିଲେ ଏବଂ କାରଖାନାରେ ଦଲାଲ ଓ ମକଦ୍ଦମମାନଙ୍କ ଦ୍ୱାରା ମାଡ ଖାଇବା ସାଧାରଣ ଘଟଣା ଥିଲା ।

ଶ୍ରମିକମାନେ ବହୁ ଖରାପ ପରିସ୍ଥିତିରେ ବହୁ ସ୍ୱଳ୍ପ ମଜୁରିରେ କାମ କରୁଥିଲେ । ଶ୍ରମିକମାନେ କୋଇଲା ଖଣିରେ ଅଣ୍ଡର ଗ୍ରାଉଣ୍ଡରେ ଅଧାଲଙ୍ଗଳା ହୋଇ କାମ କରୁଥିଲେ, କାରଣ ପୋଷାକ ପାଇଁ ସେମାନେ ବ୍ୟୟ କରିପାରୁ

ନଥିବା ଏକ ବ୍ରିଟିଶ୍ ପ୍ରତିନିଧି ଦଳ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାରତୀୟ କୋଇଲା ଖଣିକୁ ପରିଦର୍ଶନରେ ଆସି ରିପୋର୍ଟ ଦେଇଥିଲେ। ଶ୍ରମିକ ଗୋଟିଏ ସପ୍ତାହରେ ମଜୁରି ବାବଦରେ ୫ ଅଣା ପାଉଥିବା ସେମାନେ ରିପୋର୍ଟ ଦେଇଥିଲେ। ଏହି ହାସ୍ୟସ୍ପଦ ମଜୁରିରେ ସେମାନେ କିପରି ବା ଜୀବନଧାରଣ କରିବେ ?

ଯେତେବେଳେ ପରିସ୍ଥିତି ଅସହ୍ୟ ହେଲା ଶ୍ରମିକମାନେ ପ୍ରତିରୋଧ ଆରମ୍ଭ କଲେ। ଶ୍ରମିକମାନେ ଚିନ୍ତା କଲେ ମେସିନ୍ ଗୁଡିକ ଏଭଳି ଖରାପ କାର୍ଯ୍ୟ ପରିସ୍ଥିତି ପାଇଁ ଦାୟୀ ଏବଂ ସେମାନ ଅପରିଣାମଦର୍ଶୀ ଭାବରେ ମେସିନ୍ ଗୁଡିକୁ ନଷ୍ଟ କରିବାକୁ ଚେଷ୍ଟା କଲେ। ଯେତେବେଳେ କାର୍ଯ୍ୟ ପରିସ୍ଥିତି ଅସହନୀୟ ହେବାର ଦେଖାଯାଇଛି, ଶ୍ରମିକମାନେ ସୁପରଭାଇଜରମାନଙ୍କୁ ମାଡ ମାରିବାର ଉଦାହରଣ ମଧ୍ୟ ଦେଖାଯାଏ। ପଳେଇଯାଇ କାମ୍‌ରୁ ରକ୍ଷା ପାଇବା ପାଇଁ ଉଦ୍ୟମ ମଧ୍ୟ କଷ୍ଟଦାୟକ ଥିଲା, କାରଣ ଶ୍ରମିକମାନେ ନିଯୁକ୍ତିର ଚୁକ୍ତିକୁ ଖିଲାପ କରିବା ଦୋଷିରେ ଦଣ୍ଡିତ ହେଉଥିଲେ। ଶ୍ରମିକମାନଙ୍କୁ କାମରୁ ଛାଡି ଦେବାରୁ ରୁକିବା ପାଇଁ ବ୍ରିଟିଶ୍ ସରକାର ଦ୍ୱାରା ଚୁକ୍ତିଭଙ୍ଗକୁ ଏକ ଆଇନ ପାଶ୍ ହୋଇଥିଲା। ଦୁର୍ଭିକ୍ଷ ପ୍ରପିଡିତ ଅଞ୍ଚଳରୁ ଲକ୍ଷ ଲକ୍ଷ ଶ୍ରମିକ ଚୁକ୍ତିବଦ୍ଧ ଶ୍ରମିକ ଭାବେ ମିଥ୍ୟା ପ୍ରତିଶୃତିରେ ନିଯୁକ୍ତ ହେଲେ ଏବଂ ମରିସସ୍, ବ୍ରିଟିଶ୍ ଗାୟନା, ତ୍ରିନିଦାଦ୍, ଓ୍ୱେଷ୍ଟ ଇଣ୍ଡିଜ୍, ଫିଜି, ମାଲେସିଆ ଏବଂ ଦକ୍ଷିଣ ଆଫ୍ରିକାକୁ ବଳପୂର୍ବକ ଚାଲାଣ ହେଉଥିଲେ। ଯାତ୍ରାକାଳରେ ଅନେକ ମୃତ୍ୟୁମୁଖରେ ପଡିଲେ ଏବଂ ଯେଉଁମାନେ ଗନ୍ତବ୍ୟସ୍ଥଳରେ ପହଞ୍ଚିଲେ ସେମାନଙ୍କୁ ସମ୍ପୂର୍ଣ୍ଣ ନୂଆ ପରିବେଶ ସହ ଖାପ ଖୁଆଇବାକୁ ପଡୁଥିଲା। ମାତୃଭୂମି ଠାରୁ ସମ୍ପର୍କ ଛିନ୍ନ କରାଇ ଆଧୁନିକ ପୁଞ୍ଜିବାଦ ଶ୍ରମିକଶ୍ରେଣୀ ପାଇଁ ଏଭଳି ଦୁଃଖଦାୟକ ପରିସ୍ଥିତି ସୃଷ୍ଟି କରି ନିଜେ ନିଜର କାୟା ବୃଦ୍ଧି କରିଥିଲା। ଆଧୁନିକ ଶ୍ରମିକଶ୍ରେଣୀ ଏଭଳି ଏକ ତୀବ୍ର ଯମଯନ୍ତ୍ରଣା ମଧ୍ୟରୁ ଜନ୍ମଲାଭ କରିଥିଲା।

# ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଆରମ୍ଭ ଏବଂ ବିକାଶ

ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଐତିହାସିକ ବୈଶିଷ୍ଟ୍ୟକୁ ଠିକଭାବେ ବୁଝିବା ପାଇଁ ଏହାକୁ ୩ ଟି ପର୍ଯ୍ୟାୟରେ ଭାଗ କରାଯାଇପାରିବ –

୧ – ପ୍ରଥମ ପର୍ଯ୍ୟାୟ ୧୯୨୦ରେ ଜାତୀୟ ଟ୍ରେଡ୍ ୟୁନିୟନ କେନ୍ଦ୍ର ଗଠନ ପର୍ଯ୍ୟନ୍ତ

୨ – ଦ୍ୱିତୀୟ ପର୍ଯ୍ୟାୟ ୧୯୨୦ ଠାରୁ ୧୯୪୭ ରେ ସ୍ୱାଧୀନତା ଲାଭ କଲା ପର୍ଯ୍ୟନ୍ତ

୩ – ତୃତୀୟରେ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟ ଠାରୁ ଜଗତିକରଣ ଆରମ୍ଭ ପର୍ଯ୍ୟନ୍ତ। ଜଗତିକରଣ ସମୟଟିକୁ ବର୍ତ୍ତମାନର ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଆଲେଖ୍ୟ ବିଷୟ ଭାବରେ ବିବେଚନା କରାଯାଇପାରିବ।

ଏହି ସନ୍ଦର୍ଭଟିରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ସମସ୍ତ ଘଟଣା ମଧ୍ୟକୁ ନ ପଶି କେବଳ ସାଧାରଣ ଦୃଷ୍ଟିକୋଣ ଉପରେ ଆଲୋକପାତ କରାଯାଇପାରିଛି। ପ୍ରାରମ୍ଭିକ ପର୍ଯ୍ୟାୟରେ ଧର୍ମଘଟ ଶ୍ରମିକମାନଙ୍କ ଅତି ଖରାପ କାର୍ଯ୍ୟ ପରିସ୍ଥିତି ବିରୁଦ୍ଧରେ ସ୍ୱତଃସ୍ଫୂର୍ତ୍ତ ଜାଗରଣ ଥିଲା। କମ୍ ବ୍ୟବଧାନରେ କାର୍ଯ୍ୟ ବନ୍ଦ ହେଉଥିଲା ଏବଂ ଏହାକୁ ପୋଲିସ୍ ନିର୍ମମ ଦ୍ୱାରା ବଳ ପ୍ରୟୋଗପୂର୍ବକ ଦମନ କିମ୍ବା ମ୍ୟାନେଜମେଣ୍ଟ ଦ୍ୱାରା କାର୍ଯ୍ୟ ପରିସ୍ଥିତିର ସାମାନ୍ୟ ଉନ୍ନତି ସହ ବୁଝାମଣାପୂର୍ବକ ସମାଧାନ କରାଯାଉଥିଲା।

ଆନ୍ଦୋଳନର ପ୍ରାରମ୍ଭିକ ଅବସ୍ଥାରେ ମୁମ୍ବାଇରେ ଏହି ପରିସ୍ଥିତି ଅସହନୀୟ ଥିଲା। ଶ୍ରମିକମାନେ କାମ ବନ୍ଦ କରିଦେଉଥିଲେ ଏବଂ କାରଖାନା ମଧ୍ୟରେ ଖୋଲା ସ୍ଥାନରେ ବସି ରହୁଥିଲେ। ଏହା ଶ୍ରମିକମାନଙ୍କ 'ଆଖଡା' ଭାବରେ ଜନପ୍ରିୟ ଥିଲା। କୌଣସି ଭାଷଣ ନଥିଲା କିମ୍ବା ସ୍ଲୋଗାନ ନଥିଲା, ଯେତେବେଳେ କି ଶ୍ରମିକମାନେ କେବଳ ନିରବରେ ବସି ରହୁଥିଲେ। ପରବର୍ତ୍ତୀ ଅବସ୍ଥାରେ

ଶ୍ରମିକମାନେ କହିବାକୁ ଆରମ୍ଭ କଲେ, ସେତେବେଳେ ମ୍ୟାନେଜମେଣ୍ଟ ପ୍ରତିନିଧି କିଛି କିଛି ପ୍ରତିଶୃତି ଦେଉଥିଲେ । ଯଦି ଶ୍ରମିକମାନେ ଏଥିରେ ସନ୍ତୁଷ୍ଟ ହେଉଥିଲେ, ତା ହେଲେ କାମକୁ ଫେରୁଥିଲେ, ନହେଲେ ମ୍ୟାନେଜମେଣ୍ଟ ସଂଶୋଧିତ ପ୍ରସ୍ତାବ ଦେବାପର୍ଯ୍ୟନ୍ତ ବସି ରହୁଥିଲେ । ଏହି ଆଖଡାର ପରିଣତି, କାରଖାନା ମଧ୍ୟରେ ମ୍ୟାନେଜମେଣ୍ଟ, ସିକ୍ୟୁରିଟି ଗାର୍ଡ ଏବଂ ଶ୍ରମିକମାନଙ୍କ ମଧ୍ୟରେ ମାଡପିଟ ହେଉଥିବାର ନଜିର ମଧ୍ୟ ରହିଛି, ଯେତେବେଳେ କି ଅଧିକାଂଶ ସମୟରେ ପୋଲିସ ହସ୍ତକ୍ଷେପ କରି ମ୍ୟାନେଜମେଣ୍ଟକୁ ସାହାଯ୍ୟ କରିଛି । କେତେକ ଶ୍ରମିକ ଆଣ୍ଡା କେବଳ କାରଖାନାର ଗୋଟିଏ ଡିପାର୍ଟମେଣ୍ଟରେ ଥିବାର ନଜିର ଅଛି । ଲିପିବଦ୍ଧ ହୋଇଥିବା ପ୍ରଥମ ଶିଳ୍ପ ଧର୍ମଘଟ ଥିଲା ୧୮୬୨ ମସିହାରେ, ଯେତେବେଳେ କି ୧୨୦୦ ରେଳ ଶ୍ରମିକ ଦିନରେ ୮ ଘଣ୍ଟା କାମ ଦାବି କରି ହାଓଡା ଷ୍ଟେସନରେ ଧର୍ମଘଟ କଲେ । ଆଉ ଗୋଟିଏ ବଡ ଧର୍ମଘଟ ଥିଲା ୧୮୭୭ ମସିହାରେ ନାଗପୁରସ୍ଥିତ ଟାଟାର ଏମ୍ପ୍ରେସ୍ ମିଲ୍‌ରେ ମଜୁରି ବୃଦ୍ଧି ଦାବି ଉପରେ, ଯାହାକି ୪ ଦିନ ଧରି ଚାଲିଥିଲା । ଅଥଚ ସେତେବେଳ ପର୍ଯ୍ୟନ୍ତ ୟୁନିୟନ ଗଠନ ହୋଇନଥିଲା ।

ଭାରତୀୟ କାରଖାନା ଗୁଡିକରେ ଖରାପ ଅବସ୍ଥା ଏବଂ ମଜୁରି ଏତେ କମ୍ ଥିଲା ଯେ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଲଙ୍କାସାୟାରର ମିଲ୍ ମାଲିକମାନଙ୍କର ପ୍ରତିନିଧିମାନେ ପାଟିତୁଣ୍ଡ କରୁଥିଲେ । ଭାରତରେ ନୂତନଭାବେ ଉଦ୍ଭବ ବସ୍ତ୍ର ଶିଳ୍ପ ସହିତ ପ୍ରତିଯୋଗିତା ସେମାନଙ୍କ ପକ୍ଷରେ କଷ୍ଟସାଧ ହୋଇପଡୁଥିଲା । ଭାରତୀୟ ଶିଳ୍ପର ଜଘନ୍ୟ କାର୍ଯ୍ୟ ପରିବେଶ ସମ୍ପର୍କରେ ଦୀର୍ଘ ସମୟ ଆଲୋଚନା ହେଉଥିଲା ଏବଂ କାର୍ଯ୍ୟ ପରିସ୍ଥିତି ସମ୍ପର୍କରେ ଅନୁଧ୍ୟାନ ପୂର୍ବକ ପରିବର୍ତ୍ତନ ପାଇଁ ପଦକ୍ଷେପ ନେବାକୁ ଆଇନ ପ୍ରଣୟନ ହେଇନଥିବାରୁ ସମାଲୋଚନା ହେଉଥିଲା । ଫଳସ୍ୱରୂପ ବ୍ରିଟିଶ୍ ସରକାର ଦ୍ୱାରା ୧୮୮୪ ରେ ଏକ 'ଫ୍ୟାକ୍ଟ୍ରି କମିଶନ' ପଠାଇଥିଲେ ।

ଯେତେବେଳେ ଫ୍ୟାକ୍ଟ୍ରି କମିଶନ ବମ୍ବେ ଆସିଥିଲେ, ଜଣେ ମାନବପ୍ରେମୀ ଏନ୍.ଏମ୍.ଲୋଖାଣ୍ଡେଙ୍କ ନେତୃତ୍ୱରେ ବିକ୍ଷୋଭ 'ବମ୍ବେ ମିଲ୍‌ହେଣ୍ଡ୍ ଆସୋସିଏସନ' ଦ୍ୱାରା ସଂଗଠିତ ହୋଇଥିଲା। ଏସୋସିଏସନର ସଭାପତି ଭାବରେ କାର୍ଯ୍ୟ ନିର୍ଘଣ୍ଟର ସମୟ ହ୍ରାସ, ସାପ୍ତାହିକ ଛୁଟି, ମଜୁରି ବୃଦ୍ଧି ଏବଂ ଦୁର୍ଘଟଣାରେ ଆହତ ଯୋଗୁଁ କ୍ଷତିପୂରଣ ଦାବିରେ ସ୍ମାରକପତ୍ର ଦେଇଥିଲେ। ଯଦିଓ ଏହା ଭାରତର ପ୍ରଥମ ୟୁନିୟନଭାବେ ବିଚାର କରାଯାଏ, ଏହାର କୌଣସି ନିୟମିତ ସଭ୍ୟ ସଂଖ୍ୟା ନଥିଲା କିନ୍ତୁ ଶ୍ରମିକମାନଙ୍କର ସମସ୍ୟାକୁ ତୋଳି ଧରିବା ପାଇଁ ଏହା କାର୍ଯ୍ୟ କରିଥିଲା। ଲୋଖାଣ୍ଡେ 'ଦିନବନ୍ଧୁ' (ଗରିବର ବନ୍ଧୁ) ନାମରେ ଗୋଟିଏ ମରାଠି ଖବର କାଗଜ ପ୍ରକାଶ କରୁଥିଲେ।

୧୮୮୨ ରୁ ୧୮୯୦ ମଧ୍ୟରେ ବମ୍ବେ ଏବଂ ମାଡ୍ରାଜ୍ ପ୍ରେସିଡେନ୍ସିରେ ୨୫ ଟି ବଡ ବଡ ଧର୍ମଘଟ ସଂଗଠିତ ହୋଇଥିଲା। ବମ୍ବେର ଚିଫ୍ ଇନ୍ସପେକ୍ଟରଙ୍କ ରିପୋର୍ଟ ଅନୁସାରେ "ଅନେକ ଧର୍ମଘଟ ହୋଇଥିଲା। ପ୍ରତି କାରଖାନାରେ ପ୍ରତ୍ୟେକ ବର୍ଷ ୨ ଟି କରି କିନ୍ତୁ ସେସବୁ ଥିଲା କମ୍ ସମୟ ପାଇଁ। ସବୁବେଳେ ଶେଷରେ ଶ୍ରମିକମାନେ ହାରିଥାନ୍ତି। ଅନେକ କ୍ଷେତ୍ରରେ ଜୋରିମାନା ଦେଇଥାନ୍ତି ଏବଂ କେତେକ କ୍ଷେତ୍ରରେ ବକେୟା ମଜୁରି ହରାଇଥାନ୍ତି। ଧର୍ମଘଟ ଗୁଡିକର ମୁଖ୍ୟ କାରଣ ଥିଲା ବିନା ନୋଟିସ୍‌ରେ ମଜୁରି କାଟ୍।"

ଏହି ସମୟ ମଧ୍ୟରେ ବଙ୍ଗଳାରେ ଅନେକ ଝୋଟକଳରେ ଧର୍ମଘଟ ହୋଇଥିଲା। ବର୍ଦ୍ଧିତ ଶ୍ରମିକ ଅସନ୍ତୋଷରୁ ସୃଷ୍ଟ ଧାରାବାହିକ ଧର୍ମଘଟର ଫଳସ୍ୱରୂପ ବ୍ରିଟିଶ ସରକାର "୧୮୯୧ ରେ ଫ୍ୟାକ୍ଟ୍ରି ଆକ୍ଟ" ପ୍ରଣୟନ କଲେ ଯାହା ଅଧଘଣ୍ଟାଏ ମଧ୍ୟାହ୍ନ ଭୋଜନ ବିରତି ସହ ପିଲାମାନଙ୍କ ପାଇଁ ୯ ଘଣ୍ଟା, ମହିଳାମାନଙ୍କ ପାଇଁ ୧୧ ଘଣ୍ଟାର ଦୈନିକ କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କଲା। ଏହି ଆଇନ ପୁରୁଷ ଶ୍ରମିକମାନଙ୍କ ପାଇଁ କୌଣସି କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କରିନଥିବା ବେଳେ ବାଧ୍ୟତାମୂଳକ ଭାବରେ ଗୋଟିଏ ଦିନ ସାପ୍ତାହିକ ଛୁଟି ମଞ୍ଜୁର କରିଥିଲା।

ଔପନିବେଶିକ ଶାସନ ଦ୍ୱାରା କାରଖାନାରେ କାର୍ଯ୍ୟ ପରିବେଶର ନିୟନ୍ତ୍ରଣ ପାଇଁ ଏହା ଥିଲା ପ୍ରଥମ ବିଧିବଦ୍ଧ ଆଇନ।

୧୮୯୭ ରେ ବମ୍ବେ, କାନପୁର ଏବଂ ଅନ୍ୟ ଶିଳ୍ପ ଇଲାକା ଗୁଡିକରେ ମହାମାରି ପ୍ଲେଗ୍ ବ୍ୟାପିବା ଯୋଗୁଁ ବହୁ ସଂଖ୍ୟାରେ ଶ୍ରମିକ ପ୍ରାଣ ହରାଇଲେ ଏବଂ ଅନେକ ଗ୍ରାମାଞ୍ଚଳକୁ ପଳେଇଗଲେ। କାର୍ଯ୍ୟକ୍ଷେତ୍ରରେ ଉପସ୍ଥିତ ରହିବା ପାଇଁ ଶ୍ରମିକମାନଙ୍କୁ ପ୍ରବର୍ତ୍ତାଇବା ପାଇଁ ମିଲ୍ ମାଲିକମାନେ ବୋନସ୍ ଘୋଷଣା କରିଥିଲେ ଯାହା 'ପ୍ଲେଗ୍ ବୋନସ୍' ଭାବରେ ପରିଚିତ।

ପରବର୍ତ୍ତୀ ଅବସ୍ଥାରେ ବାଲ୍ ଗଙ୍ଗାଧର ତିଲକ୍, ଲାଲା ଲାଜପତ୍ ରାୟଙ୍କ ଭଳି ନେତୃତ୍ୱ ବିଦେଶୀ ହଟାଓ ଆନ୍ଦୋଳନର ସ୍ଲୋଗାନ ଦେଲେ, ଯାହା ଭାରତୀୟ ଶ୍ରମିକମାନଙ୍କୁ ପ୍ରଭାବିତ କଲା। ଏହା ବମ୍ବେ, ମାଡ୍ରାଜ୍ ଏବଂ କଲିକତାରେ ବ୍ୟାପକଭାବେ ପ୍ରସାରଲାଭ କଲା ଏବଂ କ୍ରମେ ଏହି ଇଲାକା ଗୁଡିକରେ ଟ୍ରେଡ୍ ୟୁନିୟନମାନ ଗଠିତ ହୋଇଥିଲା।

ବାଲ୍ ଗଙ୍ଗାଧର ତିଲକ୍ "ସ୍ୱରାଜ ମୋର ଜନ୍ମଗତ ଅଧିକାର ଏବଂ ମୁଁ ଏହାକୁ ହାସଲ କରିବି" କହିବାରୁ ୬ ବର୍ଷ ଜେଲ୍‌ଦଣ୍ଡରେ ଦଣ୍ଡିତ ହୋଇଥିଲେ ଓ ଏହାର ପ୍ରତିବାଦରେ ୧୯୦୮ ରେ ବମ୍ବେରେ ୧ ଲକ୍ଷରୁ ଅଧିକ ଶ୍ରମିକଙ୍କର ୬ ଦିନ ବ୍ୟାପି ଧର୍ମଘଟ ଭାରତୀୟ ଶ୍ରମିକଶ୍ରେଣୀର ପ୍ରଥମ ରାଜନୈତିକ ପ୍ରତିକ୍ରିୟା ଥିଲା। ଶ୍ରମିକମାନେ ନିର୍ଭୀକଭାବେ ପୋଲିସର ଅତ୍ୟାଚାରକୁ ସହ୍ୟ କରିବା ସହିତ ବିରୋଚିତ ଭାବରେ ପୋଲିସ୍ ଅତ୍ୟାଚାରକୁ ପ୍ରତିରୋଧ କରିଥିଲେ। ଏହି ଧର୍ମଘଟ ବମ୍ବେର ନାଗରିକମାନଙ୍କର ସମର୍ଥନ ହାସଲ କରିଥିଲା ଯାହାଙ୍କ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣ ବିରୁଦ୍ଧରେ ଜନପ୍ରିୟ ଆକସ୍ମିକ ଉତ୍‌ଥାନ ଥିଲା।

୧୯୧୭ ରେ "ଋଷ୍ ବିପ୍ଳବ", ପୁଞ୍ଜିବାଦୀ ଶାସନ ବ୍ୟବସ୍ଥାକୁ ଲୋପ କରି ଶ୍ରମିକଶ୍ରେଣୀର ଶାସନ କାଏମ୍ କରିଥିଲା । ଏପରି ଏକ ନୂଆ ମାର୍ଗ ଶ୍ରମିକଶ୍ରେଣୀକୁ ସାମ୍ରାଜ୍ୟବାଦୀ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବାକୁ ଉତ୍ସାହିତ

କରିଥିଲା । ଭାରତ ସହିତ ଏହା ବିଶ୍ୱସାରା ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ପ୍ରେରଣା ଯୋଗାଇଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ବୈପ୍ଳବିକ ଆନ୍ଦୋଳନର ଜୁଆରର ପ୍ରତିରୋଧ ପାଇଁ ୧୮୧୮ ରେ ଶ୍ରମିକମାନଙ୍କର କାର୍ଯ୍ୟ ପରିବେଶ ଏବଂ ଜୀବନଧାରଣର ଶୈଳୀରେ ଉନ୍ନତି ପାଇଁ 'ଇଣ୍ଟର ନ୍ୟାସନାଲ ଲେବର ଅର୍ଗାନାଇଜେସନ୍' (ILO) ଗଠନ କରିବାକୁ 'ଲିଗ୍ ଅଫ୍ ନେସନ୍' ସ୍ଥିର କଲା ।

ଆଇ.ଏଲ୍.ଓ. ବୈଠକ ପାଇଁ ଯେତେବେଳେ ବ୍ରିଟିଶ୍ ସରକାର ଶ୍ରମିକ ପ୍ରତିନିଧିଙ୍କୁ ମନୋନୀତ କଲେ, ଏହାକୁ ଭାରତରେ ବିରୋଧ କରାଗଲା । ସେତେବେଳେ ଯେହେତୁ କୌଣସି କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ ନଥିଲା, ୧୯୨୦ ଅକ୍ଟୋବରରେ ବମ୍ବେରେ 'ଅଲ୍ ଇଣ୍ଡିଆ ଟ୍ରେଡ୍ ୟୁନିୟନ କଂଗ୍ରେସ' ସଂଗଠିତ କରିବାକୁ ସ୍ଥିର ହେଲା । ଲାଲା ଲାଜପତ୍ ରାୟ ସେତେବେଳେ ଏଥିରେ ସଭାପତିତ୍ୱ କରିଥିଲେ । ବହୁ ବିଶିଷ୍ଟ ରାଷ୍ଟ୍ରୀୟ ଆନ୍ଦୋଳନର ନେତୃତ୍ୱ ଏହି ସମ୍ମିଳନୀରେ ଅଂଶଗ୍ରହଣ କରିଥିଲେ । ଏହିପରି ଭାବରେ ଭାରତରେ ଏ.ଆଇ.ଟି.ୟୁ.ସି. ଗଠନ ହେଲା । ୧୨୫ ଟି ୟୁନିୟନ ଏ.ଆଇ.ଟି.ୟୁ.ସି. ସହ ସହବନ୍ଧିତ ହୋଇଥିଲା । ଏହି ସମୟ ମଧ୍ୟରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଆଗକୁ ବିକାଶଲାଭ କରିଥିଲା ।

## ସ୍ୱାଧୀନତା ପୂର୍ବର ଟ୍ରେଡ୍ ୟୁନିୟନ ଆନ୍ଦୋଳନ

୧୯୧୮ ମସିହାରେ ନିୟମିତ ସଭ୍ୟ ସଂଗ୍ରହ କରି ମାଡ୍ରାଜ୍ ଥିଓସୋଫିକାଲ ସୋସାଇଟିର ବି.ପି.ଓ୍ୱାଡିଆ ନାମକ ଜଣେ ମାନବପ୍ରେମୀ ମାଡ୍ରାସ ଲେବର ୟୁନିୟନ ପ୍ରତିଷ୍ଠା କଲେ । ଏହା ପ୍ରଥମ ସଂଗଠିତ ଶୃଙ୍ଖଳିତ ୟୁନିୟନ ଭାବେ ବିବେଚନା କରାଯାଏ । ୧୯୨୧ ମସିହାରେ ବକିନ୍‌ଘାମ ଏବଂ କାରନଟିକ୍ ମିଲ୍‌ରେ ୨ ଦିନ ଧରି ଧର୍ମଘଟକୁ ନେତୃତ୍ୱ ଦେଇଥିଲେ, ଯାହାଫଳରେ ମିଲ୍ ମାଲିକମାନଙ୍କ ଠାରୁ ତାଙ୍କ ଉପରେ ଆଇନଗତ କାର୍ଯ୍ୟାନୁଷ୍ଠାନ ହୋଇଥିଲା । କମ୍ପାନୀକୁ କ୍ଷତି ପହଞ୍ଚାଇଥିବାରୁ କୋର୍ଟ ତାଙ୍କ ଉପରେ ଭାରି ଜୋରିମାନା ଧାର୍ଯ୍ୟ କରିଥିଲା । ଟ୍ରେଡ୍ ୟୁନିୟନ ଆନ୍ଦୋଳନ ସହିତ ତାଙ୍କର ସମ୍ପର୍କ ଛିନ୍ନ

କରିବାକୁ ବି.ପି.ଓ୍ୱାଡିଆଙ୍କୁ ବାଧ୍ୟ କରାଯାଇଥିଲା । ଯାହାହେଉ ଏହ ଘଟଣା ଭାରତରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କଲା ଏବଂ ଏନ୍.ଏମ୍.ଯୋଶୀ ସେଣ୍ଟ୍ରାଲ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ଟ୍ରେଡ୍ ୟୁନିୟନ କାର୍ଯ୍ୟକଳାପର ସୁରକ୍ଷା ପାଇଁ ପ୍ରସ୍ତାବ ଆଗତ କଲେ । ୧୯୨୬ ରେ ବ୍ରିଟିଶ୍ ସରକାର ଗୋଟିଏ ଟ୍ରେଡ୍ ୟୁନିୟନର ପଞ୍ଜିକରଣ ପାଇଁ ''ଇଣ୍ଡିୟାନ ଟ୍ରେଡ୍ ୟୁନିୟନ ଆକ୍ଟ'' ପାସ୍ କଲେ ।

ବ୍ରିଟିଶ୍ ସାମ୍ରାଜ୍ୟବାଦ ଭାରତର ପ୍ରସାରମୁଖୀ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ସେମାନଙ୍କର ଔପନିବେଶକ ଶାସନକୁ ଗାଦିଚ୍ୟୁତ କରିବା ପାଇଁ ଷଡଯନ୍ତ୍ର ବୋଲି ମନେ କଲେ । ତେଣୁ ୧୯୨୪ ରେ ୪ ଜଣ ପ୍ରମୁଖ ଟ୍ରେଡ୍ ୟୁନିୟନ ନେତାଙ୍କୁ ଗିରଫ କରାଗଲା ଏବଂ କାନପୁର ଷଡଯନ୍ତ୍ର ମାମଲାରେ ସମ୍ପୃକ୍ତ କରି ଦୀର୍ଘକାଳ ପାଇଁ ଜେଲ୍‌କୁ ପଠାଇ ଦିଆଗଲା । ପୁଣି ୧୯୨୮ ରେ ସମଗ୍ର ଦେଶରୁ ୩୨ ଜଣ ଟ୍ରେଡ୍ ୟୁନିୟନ କାର୍ଯ୍ୟକର୍ତ୍ତାଙ୍କୁ ମିରଟ୍ ଷଡଯନ୍ତ୍ର ମାମଲାରେ ଜଡିତ କରାଗଲା ଏବଂ ଦୀର୍ଘଦିନ ପର୍ଯ୍ୟନ୍ତ ବିଚାର ଚାଲିଲା । ଯାହାହେଉ, ଶ୍ରମିକଶ୍ରେଣୀର ଟ୍ରେଡ୍ ୟୁନିୟନ ଅଧିକାର ଉପରେ ଏ ପ୍ରକାର ଆକ୍ରମଣ ଘଟଣା ସାରା ବିଶ୍ୱରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କଲା । ଭାରତରେ ଜାତୀୟ ଆନ୍ଦୋଳନ ଏହି ଆକ୍ରମଣକୁ ନିନ୍ଦା କଲା – ଯାହାଫଳରେ ଜେଲରେ ଥିବା ବନ୍ଦୀମାନେ ଶୀଘ୍ର ମୁକ୍ତ ହେଲେ ।

ଶହ ଶହ ଟ୍ରେଡ୍ ୟୁନିୟନ ନେତାମାନଙ୍କୁ ଟ୍ରେଡ୍ ୟୁନିୟନ କାର୍ଯ୍ୟକଳାପରେ କେବଳ ମାତ୍ର ଯୋଗଦାନ ପାଇଁ ଅନେକ ଅପରାଧମୂଳକ କେଶ୍‌ରେ ଜଡିତ କରି ଜେଲକୁ ପଠାଗଲା ।

ଟ୍ରେଡ ୟୁନିୟନ ଆନ୍ଦୋଳନକୁ ବଞ୍ଚାଇବା ଓ ବିକାଶ ପାଇଁ ଜାତୀୟ ଆନ୍ଦୋଳନର ସମର୍ଥନ ବହୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଲାଲା ଲାଜପତ ରାୟ, ଚିତ୍ତରଂଜନ ଦାସ, ଜବାହରଲାଲ ନେହେରୁ, ସୁଭାଷ ଚନ୍ଦ୍ର ବୋଷ୍ ଓ ଅନ୍ୟମାନଙ୍କ ଭଳି ପ୍ରମୁଖ ଜାତୀୟ ନେତୃତ୍ୱ ଏ.ଆଇ.ଟି.ୟୁ.ସି. ର ସଭାପତି ହୋଇଥିଲେ ଏବଂ ଶ୍ରମିକଶ୍ରେଣୀର ସଂଗ୍ରାମକୁ ସମର୍ଥନ କରିଥିଲେ ।

୨୦ ରୁ ୩୦ ଦଶକ ମଧ୍ୟରେ ଶ୍ରମିକଶ୍ରେଣୀ ଦ୍ୱାରା ଅନେକ ଧର୍ମଘଟ ସଂଗ୍ରାମ ସଂଗଠିତ ହୋଇଥିଲା, ଯାହାକି ବ୍ରିଟିଶ୍ ଶାସକମାନଙ୍କୁ ଶ୍ରମିକଶ୍ରେଣୀ ଦୁଃଖର ଉପଶମ ପାଇଁ କିଛି ପଦକ୍ଷେପ ନେବାକୁ ବାଧ୍ୟ କରିଥିଲା । ୱାର୍କମେନ୍ କମ୍ପେନ୍‌ସେସନ୍ ଆକ୍ଟ (୧୯୨୩) ଏବଂ ବମ୍ବେ ମେଟରନିଟ୍ ବେନିଫିଟ୍ ଆକ୍ଟ (୧୯୩୦) ପାଶ୍ କରାଇବା ହେଉଛି କେତେକ ଉଦାହରଣ । ୧୯୨୦ ରେ ସରକାର ଅତ୍ୟାବଶ୍ୟକୀୟ ସାମଗ୍ରୀର ଦରବୃଦ୍ଧି ଯୋଗୁଁ ଶ୍ରମିକମାନଙ୍କ ଖାଦ୍ୟ ଭତ୍ତା (Food Allownce) ଦେଇଥିଲେ ଯାହା ପରବର୍ତ୍ତୀ ଅବସ୍ଥାରେ ମହଙ୍ଗାଭତ୍ତା (DA) ହେଲା । ଅତ୍ୟାବଶ୍ୟକ ସାମଗ୍ରୀ ମୂଲ୍ୟବୃଦ୍ଧିକୁ ଆକଳନ କରିବା ପାଇଁ ସରକାରଙ୍କୁ Cost of Living Index ପ୍ରସ୍ତୁତ କରିବାକୁ ହେଲା । ଶ୍ରମିକଶ୍ରେଣୀଙ୍କୁ କିଛି ସୁବିଧା ଦେବା ଉଦ୍ଦେଶ୍ୟରେ ସରକାରଙ୍କୁ ତାଙ୍କର ଜୀବନଧାରଣର ମାନ ନିର୍ଦ୍ଧାରଣର ଅନୁସନ୍ଧାନ ପାଇଁ କେତେକ ଇନକ୍ୱାରୀ କମିଟି ଗଠନ କରିବାକୁ ହେଲା ।

ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଉପରେ ଦେଶର ରାଜନୈତିକ ପରିସ୍ଥିତିର କିଛି ପ୍ରଭାବ ଥିଲା । ୧୯୨୭ ର ଶେଷ ଭାଗରେ ବ୍ରିଟିଶ୍ ସରକାର ରାଜନୈତିକ ସଂସ୍କାର ପାଇଁ ପ୍ରସ୍ତାବ ଦେବାକୁ 'ସାଇମନ୍ କମିଶନ' ମନୋନୀତ କରିଥିଲେ, ଯେତେବେଳେ କି ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ବୟକଟ୍ କରିବାକୁ ନିଷ୍ପତି ନେଇଥିଲା । ସମ୍ପୂର୍ଣ୍ଣ ସ୍ୱାଧୀନତା ଦାବୀ କରିବାକୁ ଦେଶ ଆଗେଇ ଯାଉଥିଲା । ବ୍ରିଟିଶ୍ ସରକାର ମଧ୍ୟ ହ୍ୱାଇଟ୍‌ଲିଙ୍କ ସଭାପତିତ୍ୱରେ ଆଉ ଗୋଟିଏ କମିଶନ ଗଠନ କରିଥିଲେ ଯିଏକି ଶ୍ରମିକମାନଙ୍କ ଅବସ୍ଥା ସମ୍ପର୍କରେ ଅନୁସନ୍ଧାନ କରିବ ଏବଂ ପ୍ରତିକାର ନିର୍ଣ୍ଣୟ କରିବା ପାଇଁ ପ୍ରସ୍ତାବ ଦେବ । ଜବାହରଲାଲ୍ ନେହେରୁଙ୍କ ସଭାପତିତ୍ୱରେ ୧୯୨୯ ରେ ଅନୁଷ୍ଠିତ ଏ.ଆଇ.ଟି.ୟୁ.ସି. ର ସମ୍ମିଳନୀରେ ଅଧିକାଂଶ ଏହାକୁ ବୟକଟ୍ କରିବାକୁ ଚାହିଁଲେ, ଯେତେବେଳେ କି ଏନ୍.ଏମ୍.ଯୋଶୀ, ଭି,ଭି, ଗିରି ଏବଂ ଅନ୍ୟମାନେ ଏଥିରେ ଯୋଗଦେବାକୁ

ସମର୍ଥନ କରିଥିଲେ । ଏ.ଆଇ.ଟି.ୟୁ.ସି.ର ବିଭାଜନ ହୋଇଥିଲା, ଯେତେବେଳେ କି ସଂଖ୍ୟାଲଘୁ ଗୋଷ୍ଠୀ ବାହାରିଯାଇ ଇଣ୍ଡିୟାନ ଟ୍ରେଡ୍ ୟୁନିୟନ ଫେଡେରେସନ ପ୍ରତିଷ୍ଠା କରିଥିଲେ । ୧୯୩୦ ରେ ଅନ୍ୟ ଗୋଟିଏ ବିଭାଜନ ହେଲା ଯେତେବେଳେ ସୁଭାଷ ଚନ୍ଦ୍ର ବୋଷ୍ ସଭାପତି ଥିଲେ ଏବଂ କମ୍ୟୁନିଷ୍ଟମାନେ ଏଥିରୁ ବାହାରି ଆସିଲେ ଏବଂ ରେଡ୍ ଟ୍ରେଡ୍ ୟୁନିୟନ କଂଗ୍ରେସ ଗଠନ କଲେ ।

ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ବିଭାଜନ ଆନ୍ଦୋଳନକୁ ଅତ୍ୟଧିକ କ୍ଷତିଗ୍ରସ୍ତ କରିଥିଲା । ଗଭୀର ବିଶ୍ୱ ଅର୍ଥନୈତିକ ମାନ୍ଦା ଅବସ୍ଥା ଯୋଗୁଁ ଶ୍ରମିକଶ୍ରେଣୀ ମଜୁରି କାଟ ଓ ବ୍ୟାପକ ବେକାରୀ ସମସ୍ୟାକୁ ସାମନା କରୁଥିଲା । ରେଡ୍ ଟ୍ରେଡ୍ ୟୁନିୟନ କଂଗ୍ରେସ ୧୯୩୪ ରେ ଏ.ଆଇ.ଟି.ୟୁ.ସି. ରେ ମିଶିଯିବାକୁ ନିଷ୍ପତ୍ତି ନେଲା, ଯେତେବେଳେ କି ୧୯୩୮ ରେ ଇଣ୍ଡିୟାନ ଟ୍ରେଡ୍ ୟୁନିୟନ ଫେଡେରେସନ ଏ.ଆଇ.ଟି.ୟୁ.ସି. ରେ ମିଶିଗଲା ଏବଂ ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ପୁଣି ଥରେ ଏକତାବଦ୍ଧ ହୋଇଥିଲା ।

ଅଥଚ ୧୯୩୯ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଯିବାରୁ ପରିସ୍ଥିତି ବଦଳିଗଲା ଏବଂ ବ୍ରିଟିଶ୍ ସରକାର ପୁଣି ଦମନମୂଳକ ପଦକ୍ଷେପମାନ ଚଳେଇଲେ । ୧୯୪୧ ରେ ଜର୍ମାନୀ ସୋଭିଏତ୍ ୟୁନିୟନକୁ ଆକ୍ରମଣ କଲା ଏବଂ ଜାପାନ ପର୍ଲ ହାର୍ବର ଆକ୍ରମଣ କଲା ଏବଂ ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଏହାର ମିତ୍ରମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଏହି ପରିସ୍ଥିତିରେ ବ୍ରିଟିଶ୍ ସରକାର ୧୯୪୬ ମସିହାରେ ତ୍ରିପାକ୍ଷିକ ଲେବର କନଫେରେନ୍ସ ଗଠନ କରିଥିଲେ ଏବଂ କାଇରୋରେ ପରବର୍ତ୍ତୀ ଅବସ୍ଥାରେ ଇଣ୍ଡିୟାନ ଲେବର କନଫେରେନ୍ସ ନାମରେ ଏହା ନାମିତ ହୋଇଥିଲା । ତ୍ରିପାକ୍ଷିକ ସମ୍ମିଳନୀ ଗୁଡିକ ସାଧାରଣତଃ ପ୍ରତିବର୍ଷ ଡକାଯାଏ ଯଦିଓ ଏହି କ୍ଷେତ୍ରରେ ବ୍ୟତିକ୍ରମ ରହିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଶ୍ରମିକଶ୍ରେଣୀର ଅବସ୍ଥାର ଅବନତ ହୋଇଥିଲା । ୧୯୪୩ ରେ ବଙ୍ଗଳାରେ କରାଳ ଦୁର୍ଭିକ୍ଷ ଯୋଗୁଁ ଅନାହାରରେ ଲକ୍ଷ ଲକ୍ଷ

ଲୋକ ମଲେ। ଭାରତୀୟ ଜାତୀୟ କଂଗ୍ରେସର 'ଭାରତଛାଡ ଆନ୍ଦୋଳନ'ର ଡାକରା ଫଳରେ ହଜାର ହଜାର ଜାତୀୟ ନେତୃତ୍ୱ କାରାବରଣ କରିଥିଲେ।

୧୯୪୫ ରେ ଫାଶିବାଦର ପରାଜୟ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେଲା। ଯୁଦ୍ଧ ପରବର୍ତ୍ତୀ ଅବସ୍ଥାରେ, ଏକ ନୂତନ ପ୍ରକାର ଧର୍ମଘଟର ଢେଉ ସୃଷ୍ଟି ହୋଇଥିଲା।

## ବ୍ରିଟିଶ୍ ସରକାର ବିରୁଦ୍ଧରେ ଉତ୍‌ଥାନ

ବଡ ଧରଣର ପ୍ରବଳ ଆକସ୍ମିକ ଉତ୍‌ଥାନ ସାରା ଭାରତରେ କ୍ଷିପ୍ର ହୋଇଥିଲା। ଦେଶସାରା ଆଇ.ଏନ୍.ଏ. ବନ୍ଦୀମାନଙ୍କର ମୁକ୍ତିଦାବି ଉଠିଲା। ୧୯୪୬ ଫେବୃୟାରୀରେ ରୟାଲ ଇଣ୍ଡିୟାନ ନେଭିର ବିଦ୍ରୋହ ଆରମ୍ଭ ହୁଏ ଏବଂ ନୌବାହିନୀର ଏହି ବିଦ୍ରୋହ ସପକ୍ଷରେ ବମ୍ବେର ଶ୍ରମିକମାନଙ୍କ ଧର୍ମଘଟ ଆରମ୍ଭ ହୋଇଥିଲା। ସେତେବେଳେ ବ୍ରିଟିଶ୍ ସାମ୍ରାଜ୍ୟବାଦ ଅନୁଭବ କଲା ଯେ ସେମାନେ ଭାରତକୁ ଆଉ ବେଶୀକାଳ ଯାଏ ଶାସନ କରିପାରିବେ ନାହିଁ। ଭାରତକୁ ସ୍ୱାଧୀନତା ପ୍ରଦାନ ପ୍ରସଙ୍ଗ ଆଲୋଚନା ହେଲା। କିନ୍ତୁ ସ୍ୱାଧୀନତା ମିଳିତ ଦେଶର ବିଭଜନ ଭିତର ଦେଇ। ଦେଶ ଭାରତ ଓ ପାକିସ୍ଥାନ ଭାବରେ ଦୁଇ ଟୁକୁଡାରେ ପରିଣତ ହେଲା।

ବିଶ୍ୱଯୁଦ୍ଧ ପରବର୍ତ୍ତୀ ଉତ୍‌ଥାନ ବେଳକୁ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଏକ ପ୍ରମୁଖ ଭୂମିକା ପାଳନ କରିଥିଲା ଏବଂ ଜାତୀୟ ସ୍ୱାଧୀନତା ଅର୍ଜନ କ୍ଷେତ୍ରରେ ଏହାର ଭୂମିକା ଥିଲା ସୁଦୂରପ୍ରସାରୀ।

## ସ୍ୱାଧୀନତା ପରବର୍ତ୍ତୀ ପରିସ୍ଥିତି

ଦେଶ ସ୍ୱାଧୀନତା ହେବା ପରେ ଶ୍ରମିକମାନଙ୍କ ଆଶା ଆକାଂକ୍ଷା ବହୁଗୁଣ ବୃଦ୍ଧି ପାଇଲା। ଟ୍ରେଡ୍ ୟୁନିୟନମାନେ ବର୍ଦ୍ଧିତ ମଜୁରି, ଉତ୍ତମ ସେବା ଓ ସାମାଜିକ ନିରାପତ୍ତା ପାଇଁ ଦାବି ଉପସ୍ଥାପିତ କରିଥିଲେ।

ଯଦିଓ ସରକାର ମିନିମମ୍ ୱେଜେସ୍ ଆକ୍ଟ, ପେମେଣ୍ଟ୍ ଅଫ୍ ୱେଜେସ୍

ଆକ୍ଟ, ଏମ୍ପ୍ଲୋଇଜ୍ ପ୍ରୋଭିଡେଣ୍ଟ ଫଣ୍ଡ ଆକ୍ଟ, ଏମ୍ପ୍ଲୋଇଜ୍ ଷ୍ଟେଟ୍ ଇନ୍ସୁରାନ୍ସ ଆକ୍ଟ ଆଦି ପ୍ରଣୟନ କରିଥିଲେ, ଭାରତୀୟ ଶ୍ରମିକମାନଙ୍କର ମଜୁରି ହାର ଖୁବ୍ କମ୍ ଥିଲା । ସରକାର ଗୋଟିଏ ଫେୟାର ୱେଜେସ୍ କମିଟି ନିଯୁକ୍ତି କଲେ ଯିଏ କି ସର୍ବନିମ୍ନ ମଜୁରି ଠାରୁ ବେଶୀ କିନ୍ତୁ ଲିଭିଙ୍ଗ ୱେଜ୍ ଠାରୁ କମ୍ ଦେବାକୁ ସୁପାରିଶ୍ କଲେ ଏବଂ ଶିଳ୍ପର ଦେଇପାରିବା ଭଳି କ୍ଷମତା ଥିବା ଆବଶ୍ୟକ ବିଷୟ ଉଲ୍ଲେଖ କଲେ । ଅଥଚ, ମଜୁରି ହାର ତଥାପି କମ୍ ରହିଲା ଏବଂ ୫୦ ଦଶକର ଆରମ୍ଭରେ ଅଧିକ ମଜୁରି ଦାବିରେ ଦେଶରେ ବହୁ ଧର୍ମଘଟ ହୋଇଥିଲା । ଫେୟାରୱେଜ କମିଟିର ରିପୋର୍ଟ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ପାଇଁ ଗ୍ରହଣଯୋଗ୍ୟ ନଥିଲା । ଜଣେ ମଣିଷର ବଞ୍ଚିବା ପାଇଁ ସର୍ବନିମ୍ନ ଆବଶ୍ୟକତା ଭିତ୍ତିରେ ସର୍ବନିମ୍ନ ମଜୁରି ସ୍ଥିର କରିବାକୁ ଟ୍ରେଡ୍ ୟୁନିୟନମାନେ ସରକାରଙ୍କ ଉପରେ ଚାପ ପକେଇଥିଲେ । ତେଣୁ ସରକାର ଏ ବିଷୟରେ ଅଧ୍ୟୟନ କରିବା ପାଇଁ ଗୋଟିଏ କମିଟି ନିଯୁକ୍ତ କଲେ ଏବଂ ଆବଶ୍ୟକତାନୁସାରେ ସର୍ବନିମ୍ନ ମଜୁରି ସ୍ଥିର କରିବା ପାଇଁ ଗୋଟିଏ ସୂତ୍ର ତିଆରି ହେଲା । ତେଣୁ ୧୯୫୭ ରେ ୧୫ଶ ଭାରତୀୟ ଶ୍ରମ ସମ୍ମିଳନୀରେ ଆବଶ୍ୟକତା ଅନୁଯାୟୀ ସର୍ବନିମ୍ନ ମଜୁରି ଫର୍ମୁଲା ଗୃହୀତ ହେଲା । ଜଣେ ଶ୍ରମିକର ପରିବାରରେ ୩ ଜଣ ଉପଭୋକ୍ତା ରହିବେ ଓ ଜଣପ୍ରତି ୨୭୦୦ କ୍ୟାଲୋରୀର ଖାଦ୍ୟ ହିସାବ କରାଗଲା । ଗୋଟିଏ ପରିବାର ପାଇଁ ୭୨ ଗଜ କପଡା, ସର୍ବନିମ୍ନମାନର ବାସଗୃହ ଓ ଅନ୍ୟାନ୍ୟ ଖର୍ଚ୍ଚ ମୋଟ ମଜୁରିର ୨୦% ନିର୍ଦ୍ଧାରଣ କରାଗଲା । ସମ୍ମିଳନୀ ୧୫ ଟି ଶିଳ୍ପରେ ଆବଶ୍ୟକତା ଅନୁଯାୟୀ ସର୍ବନିମ୍ନ ମଜୁରି (need based Minimum Wages) ଧାର୍ଯ୍ୟ କରିବା ପାଇଁ ମଜୁରି ବୋର୍ଡ ଗଠନ କରିବାକୁ ସ୍ଥିର କଲା । ୧୫ ତମ ଭାରତୀୟ ଶ୍ରମ ସମ୍ମିଳନୀ (ILC) ର ନିର୍ଦ୍ଧାରଣ ମୁତାବକ ମଜୁରି ବୋର୍ଡର ନିଷ୍ପତି କାର୍ଯ୍ୟକାରୀ କରିବାକୁ କୌଣସି ୱେଜ ବୋର୍ଡ ପକ୍ଷରେ ଗ୍ରହଣ ଯୋଗ୍ୟ ନ ହେବାରୁ ଶ୍ରମିକଶ୍ରେଣୀ ମଧ୍ୟରେ ପ୍ରବଳ ଅସନ୍ତୋଷ ସୃଷ୍ଟି କଲା । ଭାରତୀୟ ଶ୍ରମ ସମ୍ମିଳନୀ (Indian Labour Conference) ମଧ୍ୟ ଶିଳ୍ପରେ ମ୍ୟାନେଜମେଣ୍ଟ ଏବଂ ୟୁନିୟନମାନଙ୍କର

ଆଚରଣ ପାଇଁ ଯୁକ୍ତିସଂଗତ ଏବଂ ଶୃଙ୍ଖଳିତ ନମୂନା ନିୟମାବଳୀ (Rationalisation and a code of Disipline) ପ୍ରଣୟନ କଲେ। ଏଥିସହ ଅଭିଯୋଗ ପଦ୍ଧତି ଓ ୟୁନିୟନର ଆଚରଣ ସଂହିତା ନିର୍ଦ୍ଧାରଣ କଲେ ଯାହା ବିଭିନ୍ନ ଟ୍ରେଡ୍ ୟୁନିୟନ ସଂଗଠନ ମଧ୍ୟରେ ସମ୍ପର୍କକୁ ଚୁକ୍ତିବଦ୍ଧ କଲା। ଯାହାହେଉ ଏହି ତ୍ରିପାକ୍ଷିକ ଚୁକ୍ତିନାମା ସତ୍ତ୍ୱେ, ଶିଳ୍ପ ସମ୍ପର୍କ ସ୍ଥିତିର ପରିବର୍ତ୍ତନ ହେଲାନାହିଁ। ବୈଧାନିକ ସମର୍ଥନ ଅଭାବରୁ ଏହା ହେଉଥିବା ସରକାର ଅନୁଭବ କଲେ ଏବଂ ତ୍ରିପାକ୍ଷିକ ଚୁକ୍ତିନାମାର ଏହି ଦିଗକୁ କାର୍ଯ୍ୟକାରୀ କରିବା ପାଇଁ ଆଇନଗତ ସର୍ତ୍ତ ନିର୍ଦ୍ଧାରଣ ପାଇଁ ଚିନ୍ତା କଲେ। ତ୍ରିପାକ୍ଷିକ କମିଟି ମଧ୍ୟ ଟ୍ରେଡ୍ ୟୁନିୟନମାନଙ୍କ ସଭ୍ୟ ସଂଖ୍ୟା ପରୀକ୍ଷା ପଦ୍ଧତି ନିର୍ଦ୍ଧାରଣ କଲେ ଯାହା ୟୁନିୟନ ଗୁଡିକର ପ୍ରତିନିଧିତ୍ୱ ନିର୍ଣ୍ଣୟ କରିବ, ଏହା ମଧ୍ୟରେ ଟ୍ରେଡ୍ ୟୁନିୟନ ଗୁଡିକରେ ରାଜନୈତିକ ମତପାର୍ଥକ୍ୟ ଦୃଷ୍ଟିଗୋଚର ହେଲା।

ସ୍ୱାଧୀନତା ପରେ, ଶାସନ ଦଳ ଅନୁଭବ କଲା ତା'ର ନିଜସ୍ୱ ଟ୍ରେଡ୍ ୟୁନିୟନ ସଂଗଠନ ରହିବା ଆବଶ୍ୟକ। ତେଣୁ ୧୯୪୭ ରେ ଭାରତୀୟ ଜାତୀୟ ଟ୍ରେଡ୍ ୟୁନିୟନ କଂଗ୍ରେସ (INTUC) ପ୍ରତିଷ୍ଠା ହୋଇଥିଲା। ୧୯୪୮ ରେ ଏ.ଆଇ.ଟି.ୟୁ.ସି. ର ଗୋଟିଏ ଗୋଷ୍ଠୀ ଏବଂ ଆଇ.ଏନ୍.ଟି.ୟୁ.ସି. ରୁ ଅନ୍ୟ ଗୋଟିଏ ଗୋଷ୍ଠୀ ବାହାରି ଆସି ହିନ୍ଦ୍ ମହାସଭା (HMS) ଗଠନ କଲେ। ଏଚ୍.ଏମ୍.ଏସ୍. ମଧ୍ୟ ଭାଗ ଭାଗ ହେଲା ଏବଂ ୟୁ.ଟି.ୟୁ.ସି. ଗଠିତ ହେଲା। ଏହିପରି ବହୁ ପ୍ରକାର ଟ୍ରେଡ୍ ୟୁନିୟନ ଜନ୍ମଲାଭ କରିଥିଲା। ପରବର୍ତ୍ତୀ ଅବସ୍ଥାରେ ୟୁ.ଟି.ୟୁ.ସି. ମଧ୍ୟ ଭାଗ ହେଲା ଏବଂ ସଂଗଠନର ଗୋଟିଏ ଗ୍ରୁପ୍ ୟୁ.ଟି.ୟୁ.ସି. (ଏଲ୍.ଏସ୍.) ଗଠନ କଲେ। ୧୯୫୭ ରେ ଭାରତୀୟ ମଜଦୁର ସଂଘ (BMS) ଗଠିତ ହେଲା। ସ୍ୱାଧୀନତା ଲାଭ ପୂର୍ବରୁ ଗୋଟିଏ ସଂଗଠନ ପରିବର୍ତ୍ତେ ଆମେ ଦେଖିଲୁ ଏହିପରି ଦେଶରେ ଅନେକ ସଂଖ୍ୟକ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ କାର୍ଯ୍ୟ କରିବା ଆରମ୍ଭ କଲେ। ୧୯୭୦ ରେ ଏ.ଆଇ.ଟି.ୟୁ.ସି. ମଧ୍ୟ ଭାଗ ହେଲା ଏବଂ ସି.ଆଇ.ଟି.ୟୁ. (CITU) ଜନ୍ମଲାଭ କଲା। ଏହିପରି ଆଜି ଦିନରେ ଭାରତ

ସରକାରଙ୍କ ଦ୍ୱାରା ସ୍ୱୀକୃତିପ୍ରାପ୍ତ ୧୨ ଟି କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ ଅଛି ଯେଉଁମାନଙ୍କୁ ତ୍ରିପାକ୍ଷିକ ଆଲୋଚନା ପାଇଁ ସଭ୍ୟ ସଂଖ୍ୟା ପରୀକ୍ଷା କଲା ପରେ କେନ୍ଦ୍ର ସରକାର ସ୍ୱୀକୃତି ଦେଇଛନ୍ତି।

ୱେଜବୋର୍ଡ କାର୍ଯ୍ୟପ୍ରଣାଳୀର ବିଫଳତାକୁ ଦେଖି ରାଷ୍ଟ୍ରାୟତ୍ତ ଉଦ୍ୟୋଗମାନେ ବେତନ ଓ ଚାକିରୀ ସର୍ତ୍ତାବଳୀ ସ୍ଥିର କରିବା ପାଇଁ ଦ୍ୱିପାକ୍ଷିକ ପଦ୍ଧତିକୁ ଅଧିକ ପସନ୍ଦ କଲେ। ଇସ୍ପାତ ଶିଳ୍ପରେ ଜାତୀୟ ଯୁଗ୍ମ କମିଟି (NJCS) ୧୯୬୯ ରେ ଗଠିତ ହେଲା ଯାହାକି କୌଣସି ତୃତୀୟ ପକ୍ଷର ହସ୍ତକ୍ଷେପ ବିନା ଗୋଟିଏ ଚୁକ୍ତିନାମା କଲେ। ଏହି ପଦ୍ଧତି ଶୀଘ୍ର ଅନ୍ୟାନ୍ୟ ଶିଳ୍ପମାନଙ୍କୁ ବିସ୍ତାରଲାଭ କଲା, ଯାହା ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକରେ ସମସ୍ତ ବେତନ ଆଲୋଚନା ପାଇଁ ମାନଦଣ୍ଡ ହେଲା। ୧୯୬୯ ମସିହାରେ ପେମେଣ୍ଟ୍ ଅଫ ବୋନସ୍ ଆକ୍ଟ ପାଶ୍ ହେଲା, ଯାହା ଲାଭ କ୍ଷତି ବ୍ୟତିରେକ ୪% ସର୍ବନିମ୍ନ ବୋନସ୍ ଶ୍ରମିକମାନଙ୍କୁ ମିଳିବା ପାଇଁ ସ୍ୱୀକୃତି ଦେଲା। ୭୦ ଦଶକର ଆରମ୍ଭରେ ସରକାର ବୋନସ୍ ରିଭ୍ୟୁ କମିଟି ସର୍ବନିମ୍ନ ବୋନସ୍ ୮.୩୩% ପ୍ରଦାନ ପାଇଁ ସୁପାରିଶ କଲେ। ତାହା ସତ୍ତ୍ୱେ, ଜରୁରୀକାଳୀନ ପରିସ୍ଥିତି ସମୟରେ ଆଇନ ପରିବର୍ତ୍ତନ ହୋଇଗଲା ଏବଂ ବୋନସ୍ ୪%କୁ ହ୍ରାସ ପାଇଲା। ଟ୍ରେଡ୍ ୟୁନିୟନମାନଙ୍କ ଦ୍ୱାରା ଦେଶବ୍ୟାପୀ ଲଗାତାର ସଂଗ୍ରାମ ଫଳରେ ୧୯୭୭ ମସିହାରେ ସରକାର ପୁଣି ଆଇନରେ ପରିବର୍ତ୍ତନ ଆଣିଲେ ଏବଂ ଶ୍ରମିକମାନଙ୍କୁ ୮.୩୩% ବୋନସ୍ ମିଳିଲା।

ଶ୍ରମ ମନ୍ତ୍ରଣାଳୟର ଇଙ୍ଗିତରେ INTUC, AITU ଏବଂ HMS କୁ ନେଇ ଜାତୀୟ କାଉନସିଲ୍ (National Council) ଗଠନ ହୋଇଥିଲା। ଏହା ବିରୋଧରେ ଅନ୍ୟାନ୍ୟ ଟ୍ରେଡ୍ ୟୁନିୟନ କେନ୍ଦ୍ର ଗୁଡିକ ୧୯୭୩ ରେ ୟୁନାଇଟେଡ୍ କାଉନସିଲ ଅଫ ଟ୍ରେଡ୍ ୟୁନିୟନ (UCTU) ଗଠନ କରିଥିଲେ। ଏହା ମାଧ୍ୟମରେ ସରକାରୀ ନୀତି ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କଲେ। ସେମାନେ ସରକାରଙ୍କ ବାଧ୍ୟତାମୂଳକ ଜମା ଯୋଜନାକୁ ବିରୋଧ କରି ତୁରନ୍ତ ପ୍ରତ୍ୟାହାର କରିବାକୁ

ଦାବି କରିଥିଲେ ଏବଂ ୧୯୭୭ ରେ ଏହା ପ୍ରତ୍ୟାହୃତ ହୋଇଥିଲା । ୧୯୭୧ ରେ ସରକାର ପେନସନ ଯୋଜନା (Family Penson Scheme) ତିଆରି କଲେ ଯାହା ଶ୍ରମିକ ଏବଂ ମାଲିକଙ୍କ ଦାନରେ ଚାଲିବ । କିନ୍ତୁ ଜଣେ ଶ୍ରମିକର ରୋଜଗାରକ୍ଷମ ବ୍ୟକ୍ତିର ମୃତ୍ୟୁ ପରେ ତା'ର ଆବଶ୍ୟକତା ତୁଲାଇବା ପାଇଁ ପରିବାର-ପେନସନ ଯଥେଷ୍ଟ ହେଉନଥିଲା । ତେଣୁ ଏହି ଯୋଜନାର ପରିବର୍ତ୍ତନ ପାଇଁ ଦେଶବ୍ୟାପୀ ଅଭିଯାନ ଚାଲିଲା ଏବଂ ଶେଷରେ ସରକାର ପରିବାର ପେନସନ ସ୍କିମ୍‌କୁ କର୍ମଚାରୀ ପେନସନ ସ୍କିମ୍ (Employees Pension Scheme) ସହ ଏକତ୍ର କରି ଆଇନ ତିଆରି କଲେ । ସେହି ସମୟରେ ପରିବାର ପେନସନ ଯୋଜନାରେ ୧୪ ହଜାର କୋଟି ଟଙ୍କାର ବଳକା ପାଣ୍ଠି ଥିଲା ।

ସରକାର ୧୯୭୯ ରେ କୁଖ୍ୟାତ ଶିଳ୍ପ ସମ୍ପର୍କ ବିଲ୍ ପ୍ରସ୍ତୁତ କଲେ । ଏହି ବିଲ୍ ବିରୋଧରେ ସମସ୍ତ ଟ୍ରେଡ୍ ୟୁନିୟନମାନଙ୍କ ପକ୍ଷରୁ ଏକ ଜାତୀୟ କନଭେନସନ ଅନୁଷ୍ଠିତ ହୋଇଥିଲା ଏବଂ ପାର୍ଲିଆମେଣ୍ଟ ସମ୍ମୁଖରେ ବଡ ଧରଣର ବିକ୍ଷୋଭ ସଂଗଠିତ କରାଗଲା । ସରକାର ବାଧ୍ୟ ହୋଇ ଏହି ବିଲ୍‌କୁ ପ୍ରତ୍ୟାହାର କଲେ । ୧୯୮୧ ରେ ବମ୍ବେଠାରେ ମିଳିତ କନଭେନସନରେ ଟ୍ରେଡ୍ ୟୁନିୟନମାନଙ୍କର ଜାତୀୟ କ୍ୟାମ୍ପେନ କମିଟି ଗଠିତ ହୋଇଥିଲା । ଏହି ମିଳିତ ମଞ୍ଚ ଡାକରାରେ ୧୯୮୨ ମସିହାରେ ଦେଶବ୍ୟାପୀ ଧର୍ମଘଟର ଡାକରା ଦିଆଯାଇଥିଲା । ସାଧାରଣ ସମସ୍ୟା ଉପରେ ଏହା ଥିଲା ପ୍ରଥମ ଦେଶବ୍ୟାପୀ ଧର୍ମଘଟ । ତା ପରଠାରୁ, ୮୦ ଦଶକରେ ଜାତୀୟ କ୍ୟାମ୍ପେନ କମିଟି (NCC) ସାଧାରଣ ପ୍ରଶ୍ନ ଗୁଡ଼ିକ ଉପରେ କେତେକ ମିଳିତ ସଂଗ୍ରାମ ସଂଗଠିତ ହୋଇଥିଲା । ୧୯୮୬ରେ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଫେଡେରେସନମାନେ କମିଟି ଅଫ୍ ପବ୍ଲିକ୍ ସେକ୍ଟର ଅଣ୍ଡର ଟେକିଙ୍ଗ୍ (CPSU) ଗଠନ କରିଥିଲେ ଏବଂ ୧୯୮୭ ରେ ଜାତୀୟ ସ୍ତରରେ ପ୍ରଥମ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଶ୍ରମିକମାନଙ୍କର ଧର୍ମଘଟ ସଂଗଠିତ ହୋଇଥିଲା । କେବଳ INTUC ବ୍ୟତୀତ ସମସ୍ତ ୟୁନିୟନ ଗୋଟିଏ

ପ୍ଲାଟଫର୍ମରେ ଏକତ୍ରୀତ ହେଲେ ଏବଂ ଆଂଶିକ ଭାବେ ହେଲେ ମଧ୍ୟ ଜାତୀୟ ସ୍ତରରେ ଏକତା ପ୍ରତିଷ୍ଠିତ ହୋଇ ପାରିଥିଲା ।

## ଜଗତିକରଣ ଏବଂ ଟ୍ରେଡ୍ ୟୁନିୟନ

ସୋଭିଏତ ୟୁନିୟନ ଓ ପୂର୍ବ ୟୁରୋପୀୟ ଦେଶ ଗୁଡିକରେ ସମାଜବାଦୀ ବ୍ୟବସ୍ଥାର ପତନ ଯୋଗୁଁ ବିଶ୍ୱ ପରିସ୍ଥିତିରେ ମୌଳିକ ପରିବର୍ତ୍ତନ ଘଟିଥିଲା ଏବଂ ପୁଞ୍ଜିବାଦୀ ବ୍ୟବସ୍ଥାର ଟାଣ ବୃଦ୍ଧି ପାଇଲା । ସମାଜବାଦୀ ବ୍ୟବସ୍ଥା ଏକ ବିଫଳ ବ୍ୟବସ୍ଥା ଏବଂ ପୁଞ୍ଜିବାଦ ହିଁ ମଣିଷ ସଭ୍ୟତାର ସର୍ବଶେଷ ଉପଲବ୍ଧିଭାବେ ବ୍ୟାପକ ପ୍ରଚାର ଚାଲିଲା ।

ଆନ୍ତର୍ଜାତୀୟ ବିତ୍ତୀୟ ପୁଞ୍ଜି ବିଶ୍ୱବ୍ୟାଙ୍କ ଏବଂ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର ସମାଯୋଜନ ଗଠନମୂଳକ କାର୍ଯ୍ୟକ୍ରମ (Structural adjustment programme) ପ୍ରତିକାର ଚିଠାଭାବେ ସାମନାକୁ ଆସିଲା । ଏହାକୁ ସମସ୍ତେ ଜଗତୀକରଣ ବୋଲି ଜାଣନ୍ତି । ୧୯୯୦-୯୧ ରେ ତୀବ୍ର ଆର୍ଥିକ ସଂକଟ ଯୋଗୁଁ ଭାରତ ସରକାର ବିଦେଶି ବିନିମୟ ସଂକଟକୁ ମୁକାବିଲା କରିବା ପାଇଁ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ସର୍ତ୍ତାବଳୀକୁ ଗ୍ରହଣ କରିଥିଲେ । ସେହି ସର୍ତ୍ତାବଳୀକୁ ଗ୍ରହଣ କରିଥିବା ଯୋଗୁଁ ଭାରତୀୟ ଅର୍ଥନୀତି କେତେକ ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା । ଶ୍ରମିକଶ୍ରେଣୀ ଏବଂ ଭାରତରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ସମାଯୋଜନ ଗଠନ କାର୍ଯ୍ୟକ୍ରମ ଯୋଗୁଁ ବହୁବିଧ ପ୍ରତିଯୋଗିତା ପୂର୍ଣ୍ଣ ଆହ୍ୱାନର ସମ୍ମୁଖୀନ ହେବାକୁ ପଡୁଛି । ଏହା ମଧ୍ୟରୁ ମୁଖ୍ୟ ବିଷୟ ଗୁଡିକ ହେଲା (୧) ଅର୍ଥନୀତିର ନିୟନ୍ତ୍ରଣ ଉଠିଯିବା ଯୋଗୁଁ ପୂର୍ବରୁ ଥିବା ଲାଇସେନ୍ସ ନୀତି ବିପରୀତମୁଖୀ ହେଲା ଏବଂ ପୁଞ୍ଜି ନିବେଶକାରୀମାନେ ଶିଳ୍ପର ସ୍ଥାନ ନିରୂପଣ ପାଇଁ ସ୍ୱାଧୀନତା ପାଇଲେ । ଫଳରେ ବିଭିନ୍ନ ଅଞ୍ଚଳରେ ଅସମ ବିକାଶ ହେଲା ଏବଂ ନିଯୁକ୍ତି ସନ୍ଧାନରେ ଶ୍ରମିକମାନଙ୍କ ଦେଶାନ୍ତର ଗମନ ପ୍ରାଧାନ୍ୟ ଲାଭ

କଲା । (୨) ପରିବ୍ୟୟ ହ୍ରାସ କରିବାର ପଦକ୍ଷେପ ସ୍ୱରୂପ ଶ୍ରମଶକ୍ତି ହ୍ରାସ ସର୍ବବ୍ୟାପୀ ହେଲା, ଏହା ଶ୍ରମିକମାନଙ୍କ ଉପରେ କାର୍ଯ୍ୟଭାର ବୃଦ୍ଧି କଲା । ବେକାରୀ ବାହିନୀଙ୍କ ସଂଖ୍ୟା ଭାରତ ସମେତ ବହୁ ଦେଶରେ ବୃଦ୍ଧି ପାଇଲା । ଏପରିକି ଭାରତର ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକରେ ଜଗତିକରଣ ଯୋଗୁଁ ନିଯୁକ୍ତି ୨୩ ଲକ୍ଷରୁ ୧୮ ଲକ୍ଷକୁ କମିଗଲା । ଫଳରେ ସଂଗଠିତ କ୍ଷେତ୍ରରେ ଟ୍ରେଡ୍ ୟୁନିୟନ ସଭ୍ୟ ସଂଖ୍ୟା ହ୍ରାସ ପାଇଲା । (୩) କାଜୁଆଲ, କଣ୍ଟ୍ରାକ୍ଟୁଆଲ, ଆଉଟସୋର୍ସିଂ, ଅସ୍ଥାୟୀ, ସ୍ୱଳ୍ପ ମିଆଦି କାର୍ଯ୍ୟ ପ୍ରବଳଭାବେ ବୃଦ୍ଧି ପାଇବା ଯୋଗୁଁ ନିଯୁକ୍ତି ସୁରକ୍ଷା ଓ କାର୍ଯ୍ୟର ମାନ ହ୍ରାସ ପାଇଲା । ଆନ୍ତର୍ଜାତୀୟ ଶ୍ରମ ସଂଗଠନ (ILO) ନିର୍ଦ୍ଦେଶକ ଜେନେରାଲ ଜୋନ୍, ସୋମାଭିଆଙ୍କ ଚିକ୍କଣ କଥା ଗୁଡିକ କେବଳ କାଗଜ କଲମରେ ସୀମିତ ରହିଲା । (୪) ବିଶ୍ୱ ବ୍ୟାଙ୍କ ମତରେ ଶ୍ରମ ଆଇନ ଶାସ୍ତିମୂଳକ ନହେଲେ ବି ମାଲିକମାନଙ୍କ ପ୍ରତି ନିଜସ୍ୱ ଅଙ୍ଗୀକାରବଦ୍ଧ ହେବ, ତେଣୁ ଶ୍ରମ ଆଇନର ବ୍ୟାପକ ଉଲଂଘନ ପାଇଁ ଦ୍ୱାର ଉନ୍ମୁକ୍ତ ହେଲା । ଶ୍ରମ ଆଇନର କାର୍ଯ୍ୟକାରୀତା ପାଇଁ କାର୍ଯ୍ୟକାରୀ କଳର ଅପାରଗତା କେବଳ ଏହି ପ୍ରକ୍ରିୟାକୁ ସୁଗମ କଲା । ଇନସ୍ପେକ୍ଟର ରାଜ୍ ଖତମ୍ କରିବାର ପ୍ରତିଶ୍ରୁତି ଏହି ଘଟଣାକୁ ଅଧିକ ଗୁରୁତର କରିଥିଲା । (୫) ଘରୋଇକରଣ ଏବଂ ପୁଞ୍ଜି ପ୍ରତ୍ୟାହାର ପ୍ରକ୍ରିୟା ରାଷ୍ଟ୍ରାୟତ୍ତ ଉଦ୍ୟୋଗକୁ ଦୁର୍ବଳ କରିଥିଲା । ସାମାଜିକ ନ୍ୟାୟ ସହିତ ଅର୍ଥନୈତିକ ଅଭିବୃଦ୍ଧିର ଅବଧାରଣାକୁ ବିସର୍ଜନ କରାଗଲା । ଏହାଫଳରେ ଅଲାଭଜନକ ୟୁନିଟ୍ ଗୁଡିକର ତାଲାବନ୍ଦ ମୁଖ୍ୟ କାର୍ଯ୍ୟ ହୋଇଥିଲା । (୬) ପରିବ୍ୟୟ ହ୍ରାସ କରିବା ନାମରେ ଶ୍ରମିକମାନଙ୍କ ସାମାଜିକ ସୁରକ୍ଷା, ସୁବିଧା ସୁଯୋଗ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ ହେଲା । (୭) ବିଦେଶୀ ପୁଞ୍ଜି ଉଦାରୀକରଣ ପ୍ରକ୍ରିୟା ଦେଇ ପାରମ୍ପାରିକ ଏବଂ କ୍ଷୁଦ୍ର ଶିଳ୍ପ ଗୁଡିକୁ କ୍ଷତିଗ୍ରସ୍ତ କଲା । ତାଲାବନ୍ଦ ଏବଂ ବେକାରୀ ବୃଦ୍ଧି ପାଇଲା । ବହୁଜାତୀୟ କମ୍ପାନୀମାନଙ୍କ ଶ୍ରମ ଆଇନ ଉଲଂଘନ ଆଦି ପ୍ରତି ଆଖି ବୁଜି ଦିଆଗଲା କାରଣ କଟକଣା ସେମାନଙ୍କୁ ନିରୁତ୍ସାହିତ କରିବ । (୮) ଶ୍ରମିକଶ୍ରେଣୀର ଟ୍ରେଡ୍ ୟୁନିୟନ ଅଧିକାର

ଉପରେ ଭୟଙ୍କର ଆକ୍ରମଣ ଚାଲିଲା। ଧର୍ମଘଟର ଅଧିକାରକୁ ମୂଲ୍ୟହୀନ ମନେକରାଗଲା। ମାଲିକମାନଙ୍କୁ 'ହାୟାର ଆଣ୍ଡ୍ ଫାୟାର' ର ଅଧିକାର ଦେବା ସହ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ନଗଣ୍ୟ/ ଅଦରକାରୀ କରିବା ପାଇଁ ଚେଷ୍ଟା ପ୍ରଖର ପାଲଟିଲା।

ବିଶ୍ୱ ଆର୍ଥିକ ସଂକଟ ଶ୍ରମିକମାନଙ୍କର ଜୀବନ ଜୀବିକା ଉପରେ ଆକ୍ରମଣକୁ ଅଧିକ ଶାଣୀତ କରିଛି। ଶିଳ୍ପ ସଂସ୍ଥାମାନେ ଲକ୍ଷ ଲକ୍ଷ କୋଟି ଟଙ୍କା ଆର୍ଥିକ ପ୍ୟାକେଜ୍ ପାଇଛନ୍ତି। ୨୦୦୮-୦୯ ମଧ୍ୟରେ ଆର୍ଥିକ ସଂକଟ ଯୋଗୁଁ ୩୦ ଲକ୍ଷରୁ ଉର୍ଦ୍ଧ୍ୱ ଶ୍ରମିକ ନିଯୁକ୍ତି ହରାଇଲେ ସୁଦ୍ଧା କାଣିଚାଏ ହେଲେ ସାହାଯ୍ୟ ପାଇଲେ ନାହିଁ। ଏହି ଅର୍ଥନୈତିକ ସଂକଟ ପାଇଁ ସେମାନେ କୌଣସି ମତେ ଦାୟୀ ନୁହଁନ୍ତି କିନ୍ତୁ ସେମାନଙ୍କୁ ସବୁଦୃଷ୍ଟିରୁ କ୍ଷତିଗ୍ରସ୍ତ କରାଯାଇଥିଲା।

ଜଗତିକରଣର ଏହି ୨ ଦଶନ୍ଧି ମଧ୍ୟରେ ଟ୍ରେଡ୍ ୟୁନିୟନମାନେ ଜଗତିକରଣର ନୀତି ବିରୋଧରେ ଓ ଟ୍ରେଡ୍ ୟୁନିୟନ ଅଧିକାର ପାଇଁ ୧୨ ଟି ଦେଶବ୍ୟାପୀ ଧର୍ମଘଟ ସଂଗଠିତ କରିଛନ୍ତି।

ମତାଦର୍ଶଗତ ପାର୍ଥକ୍ୟ ସତ୍ତ୍ୱେ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ମିଳିତ ହେବାକୁ ପଡିଛି। ଆଜି ଭାରତର ସମସ୍ତ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଶ୍ରମିକଶ୍ରେଣୀର ବୃହତ୍ତର ସ୍ୱାର୍ଥର ସୁରକ୍ଷା ପାଇଁ ନିମ୍ନଲିଖିତ ମୁଖ୍ୟ ସମସ୍ୟା ଉପରେ ଏକତ୍ରୀତ ହୋଇଛନ୍ତି।

(୧) ଅତ୍ୟାବଶ୍ୟକୀୟ ସାମଗ୍ରୀର ଦରବୃଦ୍ଧି (୨) ବର୍ଦ୍ଧିତ ବେକାରୀ ଏବଂ ବେକାରୀ ବୀମାର ଆବଶ୍ୟକତା (୩) ଶ୍ରମ ଆଇନକୁ ସମ୍ପୂର୍ଣ୍ଣଭାବେ ଲାଗୁ କରିବା (୪) ଅସଂଗଠିତ ଶ୍ରମିକମାନଙ୍କୁ ସାମାଜିକ ସୁରକ୍ଷା ଦେବା ପାଇଁ ସ୍ୱତନ୍ତ୍ର ପାଣ୍ଠି ଗଠନର ଆବଶ୍ୟକତା, ଅସଂଗଠିତ ଶ୍ରମିକ ସମ୍ପର୍କୀତ ଆଇନର ସଂଶୋଧନ। (୫) ଲାଭଦାୟକ ରାଷ୍ଟ୍ରାୟତ୍ତ ଉଦ୍ୟୋଗରୁ ପୁଞ୍ଜି ପ୍ରତ୍ୟାହାର ବନ୍ଦ।

ଟ୍ରେଡ୍ ୟୁନିୟନମାନଙ୍କ ପକ୍ଷରୁ ଏହି ସମସ୍ତ ସମସ୍ୟା ଉପରେ ୧୪

ସେପ୍ଟେମ୍ବର ୨୦୦୯ ରେ ଜାତୀୟ କନଭେନସନ ଅନୁଷ୍ଠିତ ହୋଇ ମିଳିତ ଘୋଷଣା ପ୍ରକାଶ ପାଇବା ଟ୍ରେଡ୍ ୟୁନିୟନ ଅନ୍ଦୋଳନ ପକ୍ଷରେ ଏକ ଉଲ୍ଲେଖନୀୟ ଉପଲବ୍ଧି ଅଟେ । ଉପର ସ୍ତରରେ ପ୍ରତିଷ୍ଠିତ ଏଭଳି ଐତିହାସିକ ଏକତାକୁ ତଳସ୍ତରର ଶ୍ରମିକ ପର୍ଯ୍ୟନ୍ତ ନେଇଯିବାକୁ ହେବ । ଶ୍ରମିକଶ୍ରେଣୀର ସ୍ୱାର୍ଥର ସୁରକ୍ଷା ଦିଗରେ ଏହା ହିଁ ସମୟର ଆହ୍ୱାନ ।

ଜଗତିକରଣର ନୀତି ଆନ୍ତର୍ଜାତୀୟ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ମଧ୍ୟରେ ସହଯୋଗିତାର ଆବଶ୍ୟକତାକୁ ତୋଳି ଧରିଛି । ସିଗଟୁର (CIGTUR) ବ୍ୟାନର ତଳେ ଅନେକ ଗୁଡିଏ ଟ୍ରେଡ୍ ୟୁନିୟନ ଏକାଠି ହେବା ଏଭଳି ସହଯୋଗିତା ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଛି ।

ଗତବର୍ଷ ଏପ୍ରିଲ ମାସରେ କୋଚି ଠାରେ ଅନୁଷ୍ଠିତ କଂଗ୍ରେସରେ ୧୯ ଟି ଦେଶର ଟ୍ରେଡ୍ ୟୁନିୟନମାନେ ଏକାଠି ହୋଇ ବିଶ୍ୱସ୍ତରରେ ଜଗତିକରଣ ବିରୁଦ୍ଧରେ ଏବଂ ଶ୍ରମିକମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ସେମାନଙ୍କର ପ୍ରତିଜ୍ଞାବଦ୍ଧତା ଘୋଷଣା କରିଥିଲେ । ଜଗତିକରଣ ନୀତିକୁ ବିରୋଧ କରି ଭିନ୍ନ ଭିନ୍ନ ଆନ୍ତର୍ଜାତୀୟ ସହବନ୍ଧନଯୁକ୍ତ ଟ୍ରେଡ୍ ୟୁନିୟନମାନେ ମିଳିତ ହୋଇପାରିବେ । ଏଭଳି ସକାରାତ୍ମକ ପରିବର୍ତ୍ତନକୁ ଆହୁରି ଶକ୍ତିଶାଳୀ କରିବାକୁ ପଡିବ, ଯାହାଫଳରେ ସାରାବିଶ୍ୱରେ ଶ୍ରମିକଶ୍ରେଣୀ ଉପରେ ଆକ୍ରମଣର ତୀବ୍ରତାକୁ ବନ୍ଦ କରିବା ପାଇଁ ଆନ୍ତର୍ଜାତୀୟ ସଂଗ୍ରାମ ବିକାଶଲାଭ କରିପାରିବ ।

# ଦ୍ୱିତୀୟ ଭାଗ

# ନଗଦ ପରିସ୍ଥିତି

## ବହୁଧାଗ୍ରସ୍ତ ଟ୍ରେଡ୍ ୟୁନିୟନ ସଂଗଠନ

ସମକାଳୀନ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଅନ୍ୟତମ ବୈଶିଷ୍ଟ ହେଉଛି ଏହାର ବିବିଧତା/ବହୁଳତା। ଐତିହାସିକ କାରଣରୁ ରାଜନୈତିକ ଧାରାରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଭାଗ ଭାଗ ହୋଇଛି। ସ୍ୱାଧୀନତା ପୂର୍ବରୁ ଏ.ଆଇ.ଟି.ୟୁ.ସି. ଏକମାତ୍ର ଟ୍ରେଡ୍ ୟୁନିୟନ କେନ୍ଦ୍ର ଥିଲା ଏବଂ ସମସ୍ତ ରାଜନୈତିକ ସ୍ରୋତ ଗୁଡିକ ମଧ୍ୟରେ କାମ କରୁଥିଲେ। କିନ୍ତୁ ସ୍ୱାଧୀନତା ପରେ ୧୯୪୭ ରେ ଶାସକ ଦଳ ନିଜର ଟ୍ରେଡ୍ ୟୁନିୟନ ଗଠନ କରିବାକୁ ଚିନ୍ତା କଲା ଏବଂ ଅଲଗା ଏକ ସଂଗଠନ ଆଇ.ଏନ୍.ଟି.ୟୁ.ସି. ତିଆରି ହେଲା। ଫଳରେ ରାଜନୈତିକ ଧାରାରେ ଟ୍ରେଡ୍ ୟୁନିୟନ ଭାଗ ହେବା ପ୍ରକ୍ରିୟା ଆରମ୍ଭ ହେଲା। ଆଜି ଦିନରେ ତ୍ରିପାକ୍ଷିକ ପରାମର୍ଶଦାତା ପାଇଁ ଭାରତ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ୧୨ ଟି କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ କାର୍ଯ୍ୟ କରୁଛି।

ଏପରିକି ଜାତି ଭିତ୍ତିରେ ଅର୍ଥାତ ହସ୍ତଶିଳ୍ପକୁ ଆଧାର କରି ଏକ ସମୟରେ ଟ୍ରେଡ୍ ୟୁନିୟନ ଗୁଡିକର ସଂଖ୍ୟା ଥିଲା ଅନେକ ବେଶୀ। ବୋକାରୋ ଇସ୍ପାତ କାରଖାନାରେ ୪୦ ରୁ ଅଧିକ ପଞ୍ଜିକୃତ ଟ୍ରେଡ୍ ୟୁନିୟନ ଥିଲା। ଅନେକ ଶିଳ୍ପ ସଂସ୍ଥା ରହିଛି ଯେଉଁଠାରେ ୫ ରୁ ୧୦ ଟ୍ରେଡ୍ ୟୁନିୟନ କାର୍ଯ୍ୟ କରୁଛନ୍ତି। ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଅଧିକ ବିଭାଜନ, ଶ୍ରମିକ ଶ୍ରେଣୀର ମୂଳଚାଲର ଶକ୍ତିକୁ ଯଥେଷ୍ଟ ଭାବରେ ଖର୍ବ କରିଛି।

ପରିଚାଳକଙ୍କ ଦ୍ୱାରା କମ୍ପାନୀର ପକେଟ୍ ୟୁନିୟନ ଗଠିତ ହେବା ଏବଂ ସେମାନଙ୍କୁ ସ୍ୱୀକୃତି ଦେବା ଭାରତର ଅନେକ ଉଦ୍ୟୋଗରେ ଦେଖାଯାଇଥିଲା।

ବିଶେଷ ବିଶେଷ ସୁବିଧା ପ୍ରଦାନ ପୂର୍ବକ ଶ୍ରମିକମାନଙ୍କୁ କୌଣସି ଏକ ୟୁନିୟନ ଆଡେ ଆଡେଇ ନିଆଯାଉଥିଲା । ସରକାରଙ୍କ ଦ୍ୱାରା ସଭ୍ୟପଦର ଯାଞ୍ଚ ବେଳେ ଏପରି ୟୁନିୟନର ସଭ୍ୟ ସଂଖ୍ୟା ସର୍ବାଧିକ ଦର୍ଶାଯାଉଥିଲା ।

ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ରାଜନୈତିକ ବିବାଦ ମଧ୍ୟରୁ ଦୂରେଇ ରଖିବା ପାଇଁ ଶ୍ରମିକମାନେ ରାଜନୈତିକ କାର୍ଯ୍ୟକଳାପରେ ସମ୍ପୃକ୍ତ ହେବା ଉଚିତ ନୁହେଁ ବୋଲି ଯୁକ୍ତି କରାଗଲା । ବାସ୍ତବରେ ଏହା ସମ୍ଭବ ନଥିଲା । ଶ୍ରମିକମାନେ ସମାଜରେ ଆଗୁଆ ଶ୍ରେଣୀ ଭାବରେ ସେମାନଙ୍କର ମଧ୍ୟ ରାଜନୈତିକ ଦୃଷ୍ଟିଭଙ୍ଗୀ ରହିଥାଏ । ସେମାନଙ୍କର ଭୋଟ ଦେବାର ଅଧିକାର ଥିଲା ଏବଂ ଅନେକ ଶ୍ରମିକ ବିଭିନ୍ନ ସମ୍ବିଧାନିକ ସଂସ୍ଥାରେ ନିର୍ବାଚନ ଲଢୁଥିଲେ । ଏଭଳି ପରିସ୍ଥିତିରେ ଶ୍ରମିକମାନେ ରାଜନୀତିଠାରୁ ଦୂରରେ ରହିବା ସମ୍ଭବ ନଥିଲା । ବାସ୍ତବରେ, ସେମାନେ ଦେଶର ରାଜନୈତିକ ଭାଗ୍ୟ/ଭବିଷ୍ୟତ ନିର୍ଣ୍ଣୟ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିବା ସୁନିଶ୍ଚିତ ଅଟେ । କିନ୍ତୁ ପାର୍ଲିଆମେଣ୍ଟ ଏବଂ ବିଧାନସଭାମାନଙ୍କରେ ଟ୍ରେଡ୍ ୟୁନିୟନ ପ୍ରତିନିଧିତ୍ୱ ସ୍ୱଳ୍ପ ରହିବା କାରଣରୁ ଶ୍ରମିକମାନଙ୍କ ସ୍ୱର କମ୍ ଶୁଣାଯାଇଥାଏ । ତେଣୁ ଦେଶର ରାଜନୈତିକ ଘଟଣାବଳୀ ସମ୍ପର୍କରେ ଶ୍ରମିକମାନଙ୍କ ଆଗ୍ରହ ବୃଦ୍ଧି ପାଇବା ଆବଶ୍ୟକ । ସେତେବେଳେ ସେମାନେ ଦେଶରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ଅଧିକ ସକ୍ରିୟ ଭୂମିକା ଗ୍ରହଣ କରିପାରିବେ । ସବୁସତ୍ତ୍ୱେ, ଟ୍ରେଡ୍ ୟୁନିୟନ ଏକତା ଏବଂ ଶ୍ରମିକଶ୍ରେଣୀର ଆନ୍ଦୋଳନରେ ରାଜନୈତିକ ମତପାର୍ଥକ୍ୟ ପ୍ରତିବନ୍ଧକ ହେବା ଉଚିତ ନୁହେଁ ।

ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ଅନେକ ପ୍ରକାର ଆଭ୍ୟନ୍ତରିଣ ସମସ୍ୟା ରହିଛି । ଏହାସତ୍ତ୍ୱେ, ଐକ୍ୟବଦ୍ଧ ଭିତ୍ତିରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଆଗେଇବା ଉଚିତ । ଟ୍ରେଡ୍ ୟୁନିୟନ ଆନ୍ଦୋଳନ କେବଳ ଏକତା ଏବଂ ସଂଘର୍ଷ, ପାରସ୍ପରିକ ବିଶ୍ୱାସ ମାଧ୍ୟମରେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରିବ । ବାହାରୁ ମିଳୁଥିବା ଶକ୍ତି

ଏବଂ ଆଇନଗତ ବ୍ୟବସ୍ଥା ଟ୍ରେଡ୍ ୟୁନିୟନ ଆନ୍ଦୋଳନର ବହୁଳତାକୁ ଅଟକେଇ ପାରିବ ନାହିଁ। ଅଗଣତାନ୍ତ୍ରିକ ପଦ୍ଧତିରେ ଟ୍ରେଡ୍ ୟୁନିୟନ ପରିଚାଳନା ହିଁ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ବିଭେଦଗ୍ରସ୍ତ ହେବା ପାଇଁ ଦାୟୀ। ଏଣୁ, ଟ୍ରେଡ୍ ୟୁନିୟନ ଗୁଡିକ କ୍ଷେତ୍ରରେ ଗଣତାନ୍ତ୍ରିକ ପଦ୍ଧତିରେ ସ୍ୱୀକୃତ ହେଲେ ହିଁ ଏହାର ବିଭିନ୍ନତାକୁ ହ୍ରାସ କରିପାରିବ। ବ୍ୟକ୍ତିବାଦୀ ଢଙ୍ଗରେ ଚଳୁଥିବା କିଛି ଟ୍ରେଡ୍ ୟୁନିୟନ ନେତୃତ୍ୱ ନିଜସ୍ୱ ପ୍ରଭାବକୁ ୟୁନିୟନ ଉପରେ ଖଟାନ୍ତି ଯାହାକି ୟୁନିୟନର ବିଭିନ୍ନତାକୁ ସାହାଯ୍ୟ କରେ। ୟୁନିୟନର ବିଭିନ୍ନତାକୁ ଏକମାତ୍ର ସହମତିସୂଚକ ବିଚାର ଆଲୋଚନା ଭିତର ଦେଇ ରୁକିବା ସମ୍ଭବପର।

## ଆଇନ ପରିଧି ଭିତରେ ଟ୍ରେଡ୍ ୟୁନିୟନ ପରିଚାଳନା

କେନ୍ଦ୍ରୀୟ ଭାରତରେ ୫୦ ଟି ଆଇନ ଓ ରାଜ୍ୟସ୍ତରରେ ୨୦୦ ଟି ଶ୍ରମ ଆଇନ ରହିଥିଲେ ମଧ୍ୟ ଦେଶର ଶିଳ୍ପ ସମ୍ପର୍କରେ ଉନ୍ନତ ଘଟୁନାହିଁ।

ଶ୍ରମିକ ଏବଂ ଶିଳ୍ପକୁ ନେଇ ପରିଭାଷା ବିଭିନ୍ନ ଆଇନରେ ଭିନ୍ନ ଭିନ୍ନ ରହିଛି। ଏହାସତ୍ତ୍ୱେ, ମାଲିକ ସଂଘ ଓ ଟ୍ରେଡ୍ ୟୁନିୟନ ସଂଗଠନ ଗୁଡିକର ବାରମ୍ବାର ଦାବି ସତ୍ତ୍ୱେ ଭାରତ ସରକାର ଏହି କ୍ଷେତ୍ରରେ କୌଣସି ସମତା ଆଣିପାରିନାହାନ୍ତି।

ଶ୍ରମ ଆଇନ କେବଳ ୭ ରୁ ୮ ଶତାଂଶ ଶ୍ରମିକଶ୍ରେଣୀକୁ ପରିସରଭୁକ୍ତ କରିପାରିଛି। ଶ୍ରମ ଆଇନ ଗୁଡିକ ଅନୁଯାୟୀ ଶ୍ରମଶକ୍ତିର ବୃହତ ଅଂଶକୁ ନିଯୁକ୍ତି ଏବଂ ଦରମାର ସୀମାକୁ ପରିସରଭୁକ୍ତ କରିବା ଫଳରେ, ଅଧିକାଂଶ ଶ୍ରମିକ କାର୍ଯ୍ୟତଃ ଆଇନ ପରିସରଭୁକ୍ତ ହେବାରୁ ବଞ୍ଚିତ ହୋଇଥାନ୍ତି। ସୀମା ନିର୍ଦ୍ଧାରଣ ହେତୁ ପେମେଣ୍ଟ ଅଫ୍ ବୋନସ୍ ଆକ୍ଟ ଓ ପେମେଣ୍ଟ ଅଫ୍ ୱେଜେସ୍ ଆକ୍ଟ ବହୁଳ କ୍ଷେତ୍ରରେ ଅର୍ଥହୀନ ହୋଇପଡିଛି। ଶ୍ରମ ଆଇନର ପ୍ରବର୍ତ୍ତନ ପଦ୍ଧତି ଏତେ ଦୁର୍ବଳ ଯେ, ଏହାର କାର୍ଯ୍ୟକାରୀତା ସୁନିଶ୍ଚିତ କରିବା ପାଇଁ ଶ୍ରମ ବିଭାଗରେ ପର୍ଯ୍ୟାପ୍ତ କର୍ମଚାରୀ ନାହାନ୍ତି। ଆମ ଆଇନରେ ଅନେକ ଦୁର୍ବଳତା ପାଇଁ ନିଯୁକ୍ତିଦାତାମାନେ ଏହାର କାର୍ଯ୍ୟକାରୀତାକୁ ଏଡାଇ ଯିବାପାଇଁ ସମର୍ଥ ହେଉଛନ୍ତି।

କେତେକ ନିଯୁକ୍ତିଦାତା ପ୍ରଶାସନକୁ ପ୍ରଦତ୍ତ ରିହାତି ପ୍ରଦାନ କରିବାର କ୍ଷମତା ବେଳେ ବେଳେ ଅପବ୍ୟବହାର କରିଥାନ୍ତି।

ଶ୍ରମ ଆଇନ ଉଲଂଘନକାରୀଙ୍କ ପାଇଁ ଦଣ୍ଡ ଦେବା ବ୍ୟବସ୍ଥା ଥିଲେ ମଧ୍ୟ ବହୁ କ୍ଷେତ୍ରରେ ଦଣ୍ଡ ପାଇବା କ୍ୱଚିତ ଦେଖାଯାଏ। ଭବିଷ୍ୟନିଧି ପାଣ୍ଠି ବାବଦରେ ମାଲିକମାନଙ୍କ ଉପରେ ୧୫୦୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ଅନାଦେୟ ରହିଥିବା ସ୍ଥଳେ ଇ.ଏସ୍.ଆଇ. ର କାର୍ଯ୍ୟକାରୀତାରେ ମଧ୍ୟ ବହୁ ଦୁର୍ବଳତା ପରିଲକ୍ଷିତ ହେଉଛି।

କେତେକ କଲ୍ୟାଣମୂଳକ ଆଇନର ପ୍ରଶାସନିକ ଖର୍ଚ୍ଚ ଏତେ ଅଧିକ ଯେ ବାସ୍ତବରେ ଶ୍ରମିକ କଲ୍ୟାଣ ପାଇଁ ଅଧିକ ଟଙ୍କା ମିଳେନାହିଁ। ବହୁସଂଖ୍ୟକ ଶ୍ରମିକମାନଙ୍କୁ ଦରକାରୀ ସୁବିଧା ସୁଯୋଗରୁ ବଞ୍ଚିତ କରି ଏକ କ୍ଷୁଦ୍ର ଅଂଶର ଶ୍ରମିକମାନେ ସୁବିଧା ସୁଯୋଗ ପାଉଛନ୍ତି।

ଶ୍ରମ ପ୍ରସାଶନରେ ବ୍ୟାପକ ଦୁର୍ନୀତି ବିଷୟରେ ନ କହିବା ଭଲ। ମାଲିକମାନେ ଚତୁରଭାବେ ଏହି ବ୍ୟବସ୍ଥାକୁ ବ୍ୟବହାର କରି ଶ୍ରମ ଆଇନ ଉଲଂଘନ କରି ଚାଲିଛନ୍ତି। କେବଳ ଯେଉଁଠି ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଶକ୍ତିଶାଳୀ ସେଠାରେ ଶ୍ରମ ଆଇନ ସୁବିଧା ସୁଯୋଗ ଶ୍ରମିକମାନଙ୍କ ପାଖରେ ପହଞ୍ଚି ପାରିଛି।

ଶ୍ରମ ବିଭାଗର ସମସ୍ତ ଅଫିସରମାନେ ଯେ ଦୁର୍ନୀତିଗ୍ରସ୍ତ ଏକଥା କହିବା ଠିକ ହେବନାହିଁ। ଅନେକ ଅଫିସର ଅଛନ୍ତି, ଯେଉଁମାନେ ସଚ୍ଚୋଟ ଏବଂ ଅକପଟ, କିନ୍ତୁ ଦୁର୍ନୀତିଗ୍ରସ୍ତ ଅଫିସରମାନେ ସମଗ୍ର ଶ୍ରମ ସଂସ୍ଥାକୁ ବଦନାମ କରୁଛନ୍ତି। ଏହିଭଳି ଅଫିସରମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ପରିସ୍ଥିତିରେ ଉନ୍ନତି ଆଣିପାରିବ।

ଶିଳ୍ପ ସମ୍ପର୍କ ଆଇନ ହେଉଛି ମନ୍ଥର ଏବଂ ବିଳମ୍ବିତ ନ୍ୟାୟ ପ୍ରଦାନ ବ୍ୟବସ୍ଥା– ଅର୍ଥାତ ନ୍ୟାୟ ନ ଦେବା ପରି। ଆଲୋଚନାର ପଦ୍ଧତି ସମୟଭିତ୍ତିକ ନୁହେଁ ଏବଂ ନିଯୁକ୍ତିଦାତାମାନେ ସମସ୍ୟା ସମାଧାନକୁ ବିଳମ୍ବିତ କରିବା ପାଇଁ ଆଲୋଚନାରେ ଅନୁପସ୍ଥିତ ରୁହନ୍ତି। ଟ୍ରାଇବୁନାଲମାନେ କେଶ୍‌ର ଫଇସଲା ପାଇଁ ବର୍ଷ ବର୍ଷ

ଗଡ଼ାଇ ଦିଅନ୍ତି ଏବଂ ମାଲିକମାନେ ଆମର ଶ୍ରମିକମାନଙ୍କୁ କୋର୍ଟ କେଶ୍ ଲଢି ଧୈର୍ଯ୍ୟଚ୍ୟୁତ ହେବା ପାଇଁ ପ୍ରାୟ ପ୍ରତ୍ୟେକ ବିଷୟରେ ସୁପ୍ରିମ କୋର୍ଟକୁ ଯାଆନ୍ତି। ଅନେକ ଲେବର କୋର୍ଟରେ ମାସ ମାସ, ବର୍ଷ ବର୍ଷ ଧରି ପ୍ରିଜାଇଡିଙ୍ଗ୍ ଅଫିସରକୁ ନିଯୁକ୍ତ କରାଯାଏନାହିଁ, ଫଳରେ ବିଚାରଧିନ ମାମଲା ଗୁଡିକ ବର୍ଷ ବର୍ଷ ଧରି ଗଡ଼ଚାଲେ।

ସାମଗ୍ରୀକଭାବେ, ଆଇନ ଶ୍ରମିକମାନଙ୍କ ବିପକ୍ଷରେ ଯାଇଥାଏ, ସେତେବେଳେ ଶ୍ରମ ଅଦାଲତ ଉପରେ ଶ୍ରମିକମାନେ ଭରସା ହରାଇଥାନ୍ତି। କେନ୍ଦ୍ରୀୟ ଶ୍ରମ ମନ୍ତ୍ରଣାଳୟରେ ମୋ ଜରିଆରେ ଯାଇଥିବା ସେନାଇର ଏକ ୧୩୦ ଜଣିଆ ଆଇନଜୀବୀଙ୍କ ପ୍ରତିନିଧି ଦଳର ଅଭିଯୋଗ ଥିଲା ଯେ ଜଣେ ନିର୍ଦ୍ଦିଷ୍ଟ ପ୍ରିଜାଇଡିଙ୍ଗ୍ ଅଫିସର ଯିଏ କି ସାରା ବର୍ଷରେ ଗୋଟିଏ ହେଲେ ରାୟ ଶ୍ରମିକ ପକ୍ଷରେ ଦେଇ ନଥିଲେ।

ୟୁନିୟନର ସ୍ୱୀକୃତି ପାଇଁ ଜାତୀୟ ସ୍ତରରେ କୌଣସି ଆଇନ ନଥିଲା ବେଳେ କେତେକ ରାଜ୍ୟରେ ସେହି ସବୁ ସଂସ୍ଥାର ଶ୍ରମିକମାନଙ୍କ ଦ୍ୱାରା ଗୁପ୍ତ ଭୋଟ ଜରିଆରେ ୟୁନିୟନର ସ୍ୱୀକୃତି ପ୍ରଦାନ ପାଇଁ ବ୍ୟବସ୍ଥା କରାଯାଇଛି। ଜାତୀୟ ଆଇନର ଅଭାବ ହେତୁ ମାଲିକମାନେ ପ୍ରକୃତ ପ୍ରତିନିଧିତ୍ୱକାରୀ ୟୁନିୟନର ଦାବିକୁ ଅବହେଳା କରି ନିଜସ୍ୱ ୟୁନିୟନକୁ ସ୍ୱୀକୃତି ଦେଉଛନ୍ତି।

୧୯୫୭ ମସିହାରେ ୧୫ତମ ଭାରତୀୟ ଶ୍ରମ ସମ୍ମିଳନୀରେ ଗୃହୀତ ବର୍ତ୍ତମାନ ଚାଲିଥିବା ସଭ୍ୟ ସଂଖ୍ୟା ଯାଞ୍ଚ ପ୍ରକ୍ରିୟା ଅବୈଜ୍ଞାନିକ ଅଟେ। ଏହା କେବଳ ସଭ୍ୟ ସଂଖ୍ୟା ଆକଳନ ପାଇଁ ଉଦ୍ଦିଷ୍ଟ। ବ୍ୟାପକ କ୍ଷମତାପ୍ରାପ୍ତ କିଛି ଯାଞ୍ଚକାରୀ ଅଫିସର କିଛି କିଛି ୟୁନିୟନ କ୍ଷେତ୍ରରେ ତାଙ୍କର କ୍ଷମତାର ଅପବ୍ୟବହାର କରି ଚାଲିଛନ୍ତି। ଯାଞ୍ଚ ହୋଇପାରୁ ନଥିବା କୃଷି ଶ୍ରମିକଙ୍କ ସଦସ୍ୟତା ଯାହାକି ନିଯୁକ୍ତିଦାତାଙ୍କ ସାମୟିକ ଭାବେ ଜାଗା ପରିବର୍ତ୍ତନର କାରଣ ଅଟେ। କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନର ସଦସ୍ୟତା ଯାଞ୍ଚ ମଧ୍ୟ ଏହିସବୁ ତ୍ରୁଟି ପାଇଁ ବାଧାପ୍ରାପ୍ତ ହେଉଛି।

ଅଭିଜ୍ଞତାରୁ ଜଣାପଡେ ଯେ କେତେକ ଦେଶରେ କମ୍ ସଂଖ୍ୟକ ଶ୍ରମ ଆଇନ ଥିବା ବେଳେ ପ୍ରଶାସନିକ ପରିଚାଳନାର ତତ୍ପରତା ପାଇଁ ଅଧିକ ସୁଫଳ ମିଳିଥାଏ ।

ଶ୍ରମିକଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ଖୁବ ଶୀଘ୍ର ଶ୍ରମ ଆଇନର ସମୀକ୍ଷା ହେବା ଜରୁରୀ ଅଟେ ।

## ଟ୍ରେଡ୍ ୟୁନିୟନ ଗୁଡିକ କ୍ଷେତ୍ରରେ ଗଣତାନ୍ତ୍ରିକ ପରିଚାଳନା

ସଠିକ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଲାଗି ଟ୍ରେଡ୍ ୟୁନିୟନ ଗଣତନ୍ତ୍ର ଅତି ଗୁରୁତ୍ୱପୂର୍ଣ୍ଣ ପୂର୍ବ ଆବଶ୍ୟକତା ଅଟେ । ଯେତେବେଳ ପର୍ଯ୍ୟନ୍ତ ୟୁନିୟନର ସଦସ୍ୟ ଅନୁଭବ ନ କରିଛି ଯେ ୟୁନିୟନର ନୀତି ନିର୍ଦ୍ଧାରଣ କ୍ଷେତ୍ରରେ ତାହାର ବ୍ୟକ୍ତିଗତ ଭୂମିକା ରହିଛି, ସେତେବେଳ ପର୍ଯ୍ୟନ୍ତ ଟ୍ରେଡ୍ ୟୁନିୟନରେ ପ୍ରକୃତ ଗଣତନ୍ତ୍ର ପ୍ରତିଷ୍ଠା ହୋଇନଥାଏ । ଯେତେବେଳ ଯାଏ ଗୋଟିଏ ୟୁନିୟନର ହାରାହାରି ସଭ୍ୟ ସେହି ୟୁନିୟନର ସଭ୍ୟ ଭାବରେ ନିଜର ଅଧିକାର ସମ୍ପର୍କରେ ସଚେତନ ନ ହୋଇଛି, ସେପର୍ଯ୍ୟନ୍ତ ୟୁନିୟନର ନୀତି ନିର୍ଦ୍ଧାରଣ କରିବାରେ ସେ ତା'ର ଭୂମିକା ପାଳନ କରିପାରିବ ନାହିଁ । ଏହି ଉଦ୍ଦେଶ୍ୟରେ ଆଗୁଆ ଶ୍ରମିକମାନଙ୍କ ପାଇଁ ସଠିକ ଶିକ୍ଷାଦାନର ବ୍ୟବସ୍ଥା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଅଟେ ।

ଏହା ନହେଲେ ୟୁନିୟନର ସଦସ୍ୟ ୟୁନିୟନର କାର୍ଯ୍ୟକ୍ରମରେ ସକ୍ରୀୟ ଭୂମିକା ପାଳନ କରିପାରିବେ ନାହିଁ । ୟୁନିୟନର ସାଧାରଣ ବୈଠକ ଗୁଡିକରେ ଅଳ୍ପ ସଂଖ୍ୟକ ସଭ୍ୟଙ୍କର ଉପସ୍ଥିତି ଏକଥା ପ୍ରକଟିତ ହୋଇଥାଏ ।

ୱାର୍କିଙ୍ଗ୍ କମିଟି/ଏକ୍ଜ୍ୟୁଟିଭ୍ କମିଟିରେ ମଧ୍ୟ ଶ୍ରମିକଙ୍କ ଅଂଶଗ୍ରହଣ କମିଯିବା ସହିତ ଯଥାର୍ଥ ଦାବି ଉପରେ ଜୀବନ୍ତ ଆଲୋଚନାର ମାତ୍ରା ହ୍ରାସ ପାଇଥାଏ । ଅଳ୍ପସଂଖ୍ୟକ ଆଗୁଆ ଶ୍ରମିକମାନେ ହିଁ କେବଳ ଆଲୋଚନା କରୁଥିବା ବେଳେ ବୃହତ୍ତର ଅଂଶର ଶ୍ରମିକମାନେ ଚୁପ୍ ଚାପ୍ ବସିଥାନ୍ତି ।

ମୋର ଡକ୍ଟରେଟ୍ ସନ୍ଦର୍ଭ ପାଇଁ ୟୁନିୟନ ପରିଚାଳନା ବିଷୟ ପଢ଼ିବା ସମୟରେ ସୋଲାପୁର ସହରରେ ସାଧାରଣ ଭାବେ ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ଏହି ଦୁର୍ବଳତାକୁ ଉପଲବ୍ଧି କରିଛି।

ୟୁନିୟନର କାର୍ଯ୍ୟକ୍ରମ ଏହିପରି ଅଳ୍ପସଂଖ୍ୟକ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପରିଚାଳିତ ହେଉଥିବା ବେଳେ କାର୍ଯ୍ୟକାରୀ କମିଟିର ଅଧିକାଂଶ ସଭ୍ୟ ଏପରିକି ଆଗୁଆ ଶ୍ରମିକମାନେ ମଧ୍ୟ ୟୁନିୟନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରନ୍ତି ନାହିଁ। ଫଳରେ ୟୁନିୟନ ସଭ୍ୟ ସଂଖ୍ୟାରେ ନିଶ୍ଚଳତା / ସ୍ଥିରତା ଦେଖାଦିଏ।

ଏହାମଧ୍ୟ ଦେଖାଯାଇଛି ଯେ କେତେକ ୟୁନିୟନ ମ୍ୟାନେଜମେଣ୍ଟ ସହିତ ଚୁକ୍ତିନାମା ଦସ୍ତଖତ କରିବା ପୂର୍ବରୁ ଭଲ ଉପସ୍ଥାନ ଥିବା ସାଧାରଣ ବୈଠକ ପାଇଁ ଅନୁମତି ପାଆନ୍ତି ନାହିଁ। ଦ୍ୱିପାକ୍ଷିକ ବା ତ୍ରିପାକ୍ଷିକ ଚୁକ୍ତିନାମା ପ୍ରତି ଆଗୁଆ ଶ୍ରମିକମାନଙ୍କ ଅଙ୍ଗିକାର ଟ୍ରେଡ୍ ୟୁନିୟନ ଗଣତନ୍ତ୍ରର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ। ଶ୍ରମିକମାନେ ରାଜି ନହେବାରୁ ୟୁନିୟନ ନେତୃତ୍ୱ ପ୍ରତିଶ୍ରୁତି ଦେଇଥିବା ଉତ୍ପାଦିକତା ସମ୍ପର୍କୀତ ଚୁକ୍ତିନାମା କାର୍ଯ୍ୟକାରୀ ହୋଇନପାରିବାର କେତେକ ଘଟଣା/ପ୍ରସଙ୍ଗ ମୁଁ ବ୍ୟକ୍ତିଗତଭାବେ ଲକ୍ଷ୍ୟ କରିଛି। ଏହି କାରଣରୁ ସହମତ ଭିତ୍ତିକ ଉତ୍ପାଦିକତା ସମ୍ପର୍କୀୟ ଆଲୋଚନା ଯଥା ରାଜିନାମା ଶ୍ରମିକମାନଙ୍କ ଆଗୋଚରରେ ହେବା ଅର୍ଥ ଟ୍ରେଡ୍ ୟୁନିୟନ ଗଣତନ୍ତ୍ର ଧାରଣା ମୂଳରେ କୁଠାରଘାତ କରିବା ହୋଇଥାଏ।

ଏହି କ୍ଷେତ୍ରରେ କୌଣସି ଏକ ନେତୃତ୍ୱ ମଣ୍ଡଳୀ ସମ୍ପର୍କରେ ସାଧାରଣ ଶ୍ରମିକମାନଙ୍କ ସମାଲୋଚନା ପ୍ରତି ମଧ୍ୟ ଅସହିଷ୍ଣୁ ଆଚରଣ କରାଯାଇଥାଏ। ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଅଭିବୃଦ୍ଧିରେ ଏହା ସହାୟକ ହୋଇନଥାଏ। ୟୁନିୟନର ସାଧାରଣ ସଭ୍ୟମାନଙ୍କ ପ୍ରତି ୟୁନିୟନ ନେତୃତ୍ୱର ଦାୟିତ୍ୱବୋଧ/ ଦାୟବଦ୍ଧତା ଟ୍ରେଡ୍ ୟୁନିୟନ ଗଣତାନ୍ତ୍ରିକ ପରିଚାଳନାର ଅତ୍ୟନ୍ତ ପ୍ରୟୋଜନୀୟ ବିଷୟ। ଫ୍ରାନ୍ସରେ ଗୋଟିଏ ୟୁନିୟନ, ୟୁନିୟନ ପରିଚାଳନା ସମ୍ପର୍କରେ ସଭ୍ୟମାନଙ୍କ ପ୍ରତିକ୍ରିୟାକୁ ଅଧ୍ୟୟନ କରୁଥିବା ବେଳେ ଶ୍ରମିକମାନେ ଅଗଣତାନ୍ତ୍ରିକ ଧାରାରେ ଟ୍ରେଡ୍ ୟୁନିୟନ ପରିଚାଳନାର ତୀବ୍ର ସମାଲୋଚନା କରିଥିବାର ବିଷୟ ମୋତେ ଜଣାଇଥିଲେ। ଏ ବିଷୟ ଉଲ୍ଲେଖ କରିବାର ଅର୍ଥ ନୁହେଁ ଯେ,

ସମସ୍ତ ଟ୍ରେଡ୍ ୟୁନିୟନ ଗଣତାନ୍ତ୍ରିକ ଧାରାରେ ପରିଚାଳିତ ହେଉନାହିଁ। ଅନେକ ୟୁନିୟନ ଅଛନ୍ତି ଯେଉଁମାନଙ୍କର ଗଣତାନ୍ତ୍ରିକ ପରିଚାଳନା ରହିଛି କିନ୍ତୁ କେତେକ ୟୁନିୟନରେ ଭ୍ରମାତ୍ମକ ପ୍ରବଣତା ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ। ଟ୍ରେଡ୍ ୟୁନିୟନ ଅନ୍ଦୋଳନରେ ଏହି ଦୁର୍ବଳତାକୁ ଅତିକ୍ରମ କରିବା ଜରୁରୀ ଅଟେ। ଫଳରେ ଅଧିକ ଫଳପ୍ରଦ ଭାବେ ଶ୍ରମିକ ଶ୍ରେଣୀର ସୁରକ୍ଷା ପାଇଁ ଗଣତାନ୍ତ୍ରିକ ପରିଚାଳନା ମାଧ୍ୟମରେ ଭାରତରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଗୁଣାତ୍ମକ ଅଭିବୃଦ୍ଧି ହୋଇପାରିବ।

## ଭାରତରେ ତ୍ରିପାକ୍ଷିକତା/ତ୍ରିପାକ୍ଷିକବାଦର ଗତି କେଉଁ ଆଡକୁ ?

କେନ୍ଦ୍ରୀୟ ଶ୍ରମ ମନ୍ତ୍ରଣାଳୟର ପ୍ରାୟ ୩୫ ଟି ତ୍ରିପାକ୍ଷିକ କମିଟି ରହିଛି। କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଫଳପ୍ରଦଭାବେ କାର୍ଯ୍ୟକାରୀ ହୁଏନାହିଁ। କେତେକ କମିଟିର ବୈଠକ ୨ ବର୍ଷ ଧରି ଅନୁଷ୍ଠିତ ହୋଇନାହିଁ। ଯେତେବେଳେ ବୈଠକ ଡକାଯାଏ ସାଧାରଣତଃ ଅଧାଦିନ ପାଇଁ ଏବଂ ଅନେକ ବିଷୟ ଗୁଡିକ ଶାସନଶ୍ରେଣୀ ପକ୍ଷରୁ ଉପର ଠାଉରିଆଭାବେ ଆଲୋଚିତ। ଏହା ସମସ୍ୟା ସମାଧାନ ପାଇଁ ସାହାଯ୍ୟକାରୀ ହୁଏନାହିଁ। କେତେକ କମିଟି ତ୍ରିପାକ୍ଷିକ ପରାମର୍ଶ କରିବାର ଲକ୍ଷ୍ୟ/ଉଦ୍ଦେଶ୍ୟକୁ ବ୍ୟାହତ କରି କେବଳ ବିଧି ବିଧାନ ଅନୁଯାୟୀ କାର୍ଯ୍ୟ କରେ। କେତେକ ଟ୍ରେଡ୍ ୟୁନିୟନ ନେତା ଏଭଳି ବୈଠକକୁ ‘‘ଚା ଏବଂ ବିସ୍କୁଟ କମିଟି’’ କହିବାକୁ ପଛାନ୍ତି ନାହିଁ। ପୂର୍ବରୁ ଡକାଯାଇଥିବା ବୈଠକକୁ ସ୍ଥଗିତ ରଖିବା ଘଟଣା ବାରମ୍ବାର ଘଟିଥାଏ।

ଏହା ମଧ୍ୟ ଦେଖାଯାଇଥାଏ ଯେ ବୈଠକର ନିଷ୍ପତି ଗୁଡିକ କାର୍ଯ୍ୟକାରୀ କରାଯାଏନାହିଁ। ଶ୍ରମ ମନ୍ତ୍ରଣାଳୟର ଅଫିସର ଏବଂ ମନ୍ତ୍ରୀଙ୍କର ବାରମ୍ବାର ପରିବର୍ତ୍ତନ ତ୍ରିପାକ୍ଷିକ ପଦ୍ଧତିର ବ୍ୟର୍ଥତାର ମଧ୍ୟ ଅନ୍ୟତମ କାରଣ।

ଏକ ସଂସ୍ଥା ଭାବେ ଶ୍ରମ ମନ୍ତ୍ରଣାଳୟର କ୍ଷମତାକୁ କେନ୍ଦ୍ର ସରକାର ହ୍ରାସ କରିଛନ୍ତି। ଯେଉଁ ବିଭାଗରେ ଏକଦା ଗୁଲଜରୀଲାଲ ନନ୍ଦା, ଜଗଜୀବନ ରାମ୍,

ଭି.ଭି.ଗିରି ଏବଂ ଅନ୍ୟମାନଙ୍କ  ପରି ବଳିଷ୍ଠ/ଟାଣୁଆ ନେତାମାନେ ରହିଥିଲେ, ବର୍ତ୍ତମାନ କେବଳ ଜଣେ ରାଷ୍ଟ୍ରମନ୍ତ୍ରୀଙ୍କୁ ଦିଆଯାଇଛି। ବସ୍ତୁତଃ ବିଭାଗଟି ଉପରେ ତାଙ୍କର କୌଣସି କର୍ତ୍ତୃତ୍ୱ ରହିନଥାଏ। କ୍ୟାବିନେଟ୍ ପାହିଆ ମନ୍ତ୍ରୀଙ୍କ ଉପରେ ନିର୍ଭର କରିଥାନ୍ତି। ନିଯୁକ୍ତି/ସମ୍ପୃକ୍ତ ମନ୍ତ୍ରଣାଳୟର ବରିଷ୍ଠ ଅଫିସରମାନେ ବହୁ ତ୍ରିପାକ୍ଷିକ କମିଟିରେ ଉପସ୍ଥିତ ରହିବାକୁ ପ୍ରତ୍ୟାଖ୍ୟାନ କରୁଥିବା ମଧ୍ୟ ମୁଁ ଦେଖିଛି।

ଦୀର୍ଘକାଳୀନ/ଦୀର୍ଘମିଆଦି ଗୁରୁତ୍ୱ ରଖୁଥିବା କୌଣସି ନିଷ୍ପତିରେ ନ ପହଞ୍ଚି ଭାରତୀୟ ଶ୍ରମ ସମ୍ମିଳନୀ ଏବଂ ଷ୍ଟାଣ୍ଡିଙ୍ଗ୍ କମିଟି କେବଳ ଆଲୋଚନା/ଯୁକ୍ତିତର୍କ ସମିତିରେ ପରିଣତ ହୋଇଛି। ଗତ ୧୦ ବର୍ଷ ମଧ୍ୟରେ ଭାରତୀୟ ଶ୍ରମ ସମ୍ମିଳନୀ ପକ୍ଷରୁ କୌଣସି ଗୋଟିଏ ହେଲେ ନିଷ୍ପତ୍ତି ଗୃହୀତ ହେବା ମୁଁ ଦେଖିନାହିଁ। ଯାହାର କୌଣସି ଦୀର୍ଘକାଳବ୍ୟାପୀ ପ୍ରଭାବ ରହିଥିବ। ଷ୍ଟାଣ୍ଡିଙ୍ଗ କମିଟି ଯାହା ଦେଶର ଶ୍ରମ ସମ୍ପର୍କ ଚିତ୍ରର ସମୀକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା ଏବେ ଭାରତୀୟ ଶ୍ରମ ସମ୍ମିଳନୀର ଏଜେଣ୍ଡା ନିଷ୍ପତି କରିବା କମିଟିରେ ପରିଣତ ହୋଇଛି।

ଭାରତରେ ତ୍ରିପାକ୍ଷିକ କମିଟି ଗୁଡିକର ପ୍ରଭୁତ ଅବମୂଲ୍ୟାୟନ, ସରକାରଙ୍କର ତ୍ରିପାକ୍ଷିକ ପରାମର୍ଶ ପ୍ରକ୍ରିୟାକୁ କ୍ଷୁର୍ଣ୍ଣ କରିଛି।

ଭାରତ ସରକାରଙ୍କ ବରିଷ୍ଠ ମନ୍ତ୍ରୀମାନେ ନିଯୁକ୍ତିଦାତା ମାଲିକ ସଂଗଠନମାନଙ୍କ ଦ୍ୱାରା ଆହୁତ ବୈଠକରେ ନିୟମିତ ବିଚାର ବିମର୍ଷ କରିଥାନ୍ତି। ବରିଷ୍ଠ ମନ୍ତ୍ରୀମାନେ କେବେ ହେଲେ ମାଲିକମାନଙ୍କ ଦ୍ୱାରା ଡକାଯାଇଥିବା ବୈଠକରୁ ନିଜକୁ ବାଦ ଦେଇନଥାନ୍ତି। କିନ୍ତୁ, ଶ୍ରମିକମାନଙ୍କ ପାଇଁ ଉଦ୍ଦିଷ୍ଟ ତ୍ରିପାକ୍ଷିକ କମିଟି ବୈଠକ ପ୍ରତି ଏପରି ଗୁରୁତ୍ୱ ଦିଆଯାଇନଥାଏ। ତ୍ରିପାକ୍ଷିକ ପଦ୍ଧତି ଏହାଫଳରେ ଦୁର୍ବଳ ହୋଇଛି ଏବଂ ଟ୍ରେଡ୍ ୟୁନିୟନ ଅଧିକାର, ଏପରିକି ଶ୍ରମ ସମ୍ପର୍କ କ୍ଷେତ୍ରରେ ମଧ୍ୟ ଏହା ପ୍ରତିଫଳିତ ହେଉଥିବା ଲକ୍ଷ୍ୟ କରାଯାଇଥାଏ।

## ଶ୍ରମଜୀବୀ ମହିଳା ଓ ଟ୍ରେଡ୍ ୟୁନିୟନ

ଭାରତରେ ଶ୍ରମଜୀବୀ ମହିଳାମାନଙ୍କ ପାଇଁ କାମର ସୁଯୋଗ ଏବେବି ସ୍ୱପ୍ନ ହୋଇରହିଛି। ସଂଗଠିତ କ୍ଷେତ୍ରରେ ମହିଳାମାନଙ୍କ ନିଯୁକ୍ତି ହାର ୧୦–୧୧

ଭାଗ ହୋଇଥିବା ବେଳେ ଅସଂଗଠିତ କ୍ଷେତ୍ରରେ ଏହା ପ୍ରାୟ ୩୦ ଭାଗ। ନିଯୁକ୍ତିର ଅନେକ କ୍ଷେତ୍ରରେ ମହିଳାମାନଙ୍କୁ କାମର ସୁଯୋଗ ମିଳୁନାହିଁ। ଅନେକ ଶିଳ୍ପରେ ସେମାନଙ୍କୁ ଭାରି ଯନ୍ତ୍ରପାତି କ୍ଷେତ୍ରରେ କାର୍ଯ୍ୟ କରିବାର ଅନୁମତି ଦିଆଯାଉ ନାହିଁ, ଯେତେବେଳେ ସ୍ୱୟଂ ଯୋଜନା କମିଶନ ପାମ୍ପଡ ତିଆରି, ମହମବତୀ ତିଆରି ଆଦି କାମ ଗୁଡିକୁ ମହିଳାମାନଙ୍କ କାର୍ଯ୍ୟ ଭାବେ ପରିକଳ୍ପନା କରିଥାନ୍ତି। କୋଇଲା ଖଣିରେ ଏକ ସ୍ୱେଚ୍ଛାକୃତ ଅବସର ଯୋଜନା ରହିଛି, ଯାହାଦ୍ୱାରା ଜଣେ ମହିଳା ଅବସର ନେଲେ ବଦଳରେ ପରିବାରର ଜଣେ ପୁରୁଷ ସଦସ୍ୟ ନିଯୁକ୍ତି ପାଇବେ। ଏପରିକି ବର୍ତ୍ତମାନ ଅନେକ ଶିଳ୍ପରେ, କେତେକ ବହୁଜାତୀୟ କମ୍ପାନୀରେ ଗର୍ଭବତୀ ମହିଳାମାନଙ୍କୁ କାମ ଦିଆଯାଉ ନାହିଁ। କେତେକ ଶିଳ୍ପରେ ବିବାହ ପରେ ମହିଳାମାନେ ଚାକିରୀ ହରାଉଥିବା ପ୍ରକ୍ରିୟା ଚାଲୁ ରହିଛି। ପ୍ରସୂତିକାଳୀନ ସୁବିଧା ଆଇନ, କ୍ରେଚ୍‌ର ନିୟମ, ରାତ୍ରି ସିଫ୍ଟ କାର୍ଯ୍ୟ କ୍ଷେତ୍ରରେ କଟକଣା ଆଦି କାରଣରୁ ଆମର ଶିଳ୍ପ ଉଦ୍ୟୋଗ ଗୁଡିକରେ ମହିଳାମାନେ କମ୍ ନିଯୁକ୍ତି ପାଉଥିବା ବିଚାର କରାଯାଇଥାଏ।

କେତେକ ୟୁନିୟନ ସେମାନଙ୍କର ଦାବିପତ୍ରରେ ଶ୍ରମଜୀବୀ ମହିଳାମାନଙ୍କ ସମସ୍ୟାକୁ ତୋଳି ଧରନ୍ତି ନାହିଁ। ମହିଳା ଶ୍ରମିକମାନଙ୍କ ସମସ୍ୟା ୟୁନିୟନର ନୁହେଁ, ଏହା କେବଳ ସେମାନଙ୍କର ସମସ୍ୟା ବୋଲି ବିବେଚନା କରିବା ଏକ ତ୍ରୁଟିପୂର୍ଣ୍ଣ ପ୍ରବଣତା ଅଛି। ଫଳରେ ୟୁନିୟନର ମହିଳା ସଭ୍ୟ ସଂଖ୍ୟା ସ୍ୱଳ୍ପ ହୋଇଥାଏ। ଦଳିତ ଏବଂ ସଂଖ୍ୟାଲଘୁ ମହିଳାମାନଙ୍କ ସମସ୍ୟା କ୍ଷେତ୍ରରେ ଏହି ସମସ୍ୟା ଅଧିକ ଗୁରୁତର। ଶ୍ରମଜୀବୀ ମହିଳା କୋ-ଅର୍ଡିନେସନ କମିଟି ଗଠନ କରି ମହିଳା ଶ୍ରମିକମାନଙ୍କ ସମସ୍ୟାକୁ ଊର୍ଦ୍ଧ୍ୱରେ ତୋଳି ଧରିବା ପାଇଁ ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ଅଧିକ ସଚେତନତା ସୃଷ୍ଟି କରାଯାଇଥିଲେ ମଧ୍ୟ, ସାମଗ୍ରୀକଭାବେ ଏହାର କାର୍ଯ୍ୟ ଅବହେଳିତ ଅବସ୍ଥାରେ ରହିଛି।

ୟୁନିୟନରେ ମହିଳା କର୍ମକର୍ତ୍ତାମାନଙ୍କ ବିକାଶ ପାଇଁ ଟ୍ରେଡ୍ ୟୁନିୟନମାନଙ୍କୁ ଯଥାସାଧ୍ୟ ଅଧିକ ଚେଷ୍ଟା କରିବାକୁ ପଡିବ। ଏପରି ବି ଶିଳ୍ପ ଅଛି ଯେଉଁଠାରେ

ମହିଳା ଶ୍ରମିକ ଅଧିକ କିନ୍ତୁ ୟୁନିୟନର କାର୍ଯ୍ୟକାରୀ କମିଟି ପୁରୁଷ ଶ୍ରମିକଙ୍କ ଦ୍ୱାରା ଭରପୁର। ଶିଳ୍ପ ସ୍ତରଠାରୁ ଆରମ୍ଭ କରି ରାଜ୍ୟ ଏବଂ ଜାତୀୟ ସ୍ତରରେ ମଧ୍ୟ ମହିଳା କର୍ମୀଙ୍କ ଉପସ୍ଥିତି ଏବେବି ଅତ୍ୟନ୍ତ ନଗଣ୍ୟ। ଭାରତ ସରକାରଙ୍କ ତ୍ରିପାକ୍ଷିକ କମିଟି ଗୁଡିକରେ ମହିଳା ଶ୍ରମଜୀବୀଙ୍କ ପ୍ରତିନିଧିତ୍ୱ ଅତିଶୟ ସ୍ୱଳ୍ପ ଅଟେ।

ଟ୍ରେଡ୍ ୟୁନିୟନମାନେ ମହିଳାମାନଙ୍କୁ ଟ୍ରେଡ୍ ୟୁନିୟନ ନୀତି ସମ୍ପର୍କରେ ଶିକ୍ଷା ପ୍ରଦାନ ପ୍ରତି ସ୍ୱତନ୍ତ୍ର ଗୁରୁତ୍ୱ ଦେବାକୁ ହେବ। ଏହାଫଳରେ ସେମାନେ ସଫଳତାପୂର୍ବକ ୟୁନିୟନ ଦାୟିତ୍ୱ ତୁଲାଇପାରିବେ। ଅନେକ ସମୟରେ ୟୁନିୟନ ଗୁଡିକର ବୈଠକ ଏପରି ସମୟରେ ହୋଇଥାଏ, ଯେଉଁ ସମୟ ମହିଳାମାନଙ୍କ ଘରୋଇ ଦାୟିତ୍ୱ ତୁଲାଇବାକୁ ପଡିଥାଏ।

ଅଧିକାଂଶ ଶ୍ରମଜୀବୀ ମହିଳା କାର୍ଯ୍ୟକ୍ଷେତ୍ରରେ ତଳପାହ୍ୟାରେ କାମ କରିଥାନ୍ତି। କୁଶଳୀ, ଉଚ୍ଚ କୁଶଳୀ ଏବଂ ସର୍ବୋପରି ଏକଜ୍ୟୁଟିଭ୍ ସ୍ତରରେ ସେମାନଙ୍କ ସଂଖ୍ୟା କମିଯାଉଛି। କାର୍ଯ୍ୟକ୍ଷେତ୍ରରେ ଶ୍ରମଜୀବୀ ମହିଳାମାନଙ୍କୁ ଯୌନ ନିର୍ଯ୍ୟାତନା ବୃଦ୍ଧି ପାଉଥିବା ବେଳେ ଏପରି ଭୟ ବିରୋଧରେ ସାମୂହିକ ପ୍ରତିରୋଧର ଅଭାବ ଅତ୍ୟନ୍ତ ସ୍ପଷ୍ଟ ଅଟେ। ଅପରାଧୀମାନଙ୍କ ବିରୁଦ୍ଧରେକଠୋର କାର୍ଯ୍ୟାନୁଷ୍ଠାନର ଅଭାବ ଏବଂ ଅପରାଧୀଙ୍କ ଦ୍ୱାରା ଅଭିଯୋଗକାରିଣୀର ନୈତିକ ଚରିତ୍ର ସମ୍ପର୍କରେ ପ୍ରଶ୍ନବାଣ ଯୋଗୁଁ ମହିଳାମାନେ ଯୌନ ଉତ୍ପୀଡନ ସମ୍ପର୍କରେ ଅଭିଯୋଗ କରିବାକୁ ଅନିଚ୍ଛା ପ୍ରକାଶ କରିଥାନ୍ତି। କାର୍ଯ୍ୟସ୍ଥଳୀରେ ବା କାର୍ଯ୍ୟକ୍ଷେତ୍ରକୁ ଯିବା ରାସ୍ତାରେ ଉତ୍ପୀଡନ ଏବଂ ଧର୍ଷଣ ଘଟଣା ଘଟୁଥିଲେ ମଧ୍ୟ ଅଧିକାରୀଙ୍କ ପକ୍ଷରୁ ସଠିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଏ ନାହିଁ। ମହିଳା କର୍ମଚାରୀଙ୍କୁ ପଦୋନ୍ନତିର ସୁବିଧାକୁ ସହଜ କରିବା ପାଇଁ କାର୍ଯ୍ୟକ୍ଷେତ୍ରରେ ଯୌନ ଅନୁଗ୍ରହ, ଅହେତୁକ ପକ୍ଷପାତିତା ବାରମ୍ଵାର ଘଟିଥାଏ।

ସୁପ୍ରିମକୋର୍ଟର ବାରମ୍ବାର ନିର୍ଦ୍ଦେଶ ସତ୍ତ୍ୱେ ଭାରତ ସରକାର ଅପରାଧୀମାନଙ୍କୁ କଠିନ ଦଣ୍ଡ ଦେବାକୁ ଆଇନ ତିଆରି କରୁନାହାନ୍ତି। ସରକାର

କେବଳ ଯୌନ ଉତ୍ପୀଡନର କାରଣ ସମ୍ପର୍କରେ ବହୁ ପ୍ରକାର ବ୍ୟାଖ୍ୟା କରୁଥିବା ବେଳେ ଅପରାଧ ପାଇଁ କୌଣସି ଦଣ୍ଡବିଧାନର ସୁପାରିଶ କରୁନାହାନ୍ତି। ୟୁନିଟ୍ ସ୍ତରୀୟ ଅଭିଯୋଗ କମିଟି ଗୁଡିକ ମଧ୍ୟ ଠିକଭାବେ କାର୍ଯ୍ୟକାରୀ ହେଉନାହିଁ। ଯେତେବେଳେ ଦୁଷ୍କୃତକାରୀ ୟୁନିୟନର ସଭ୍ୟ, ୟୁନିୟନଟି ପୀଡିତା ଜଣଙ୍କର ସ୍ୱାର୍ଥ ରକ୍ଷା କରିନଥାଏ ବରଂ ଅପରାଧୀ ବିରୁଦ୍ଧରେ ଶାସ୍ତି ଏଡେଇବା ପାଇଁ ମହିଳା କର୍ମଚାରୀଙ୍କ ଉପରେ ଆପୋଷ ବୁଝାମଣା ପାଇଁ ଚାପ ପକାଇଥାଏ।

ଏହି କାରଣରୁ, ଟ୍ରେଡ୍ ୟୁନିୟନ ଆନ୍ଦୋଳନ କାର୍ଯ୍ୟକ୍ଷେତ୍ରରେ ମହିଳାମାନଙ୍କ ସମାନତା ପ୍ରଶ୍ନକୁ ତୋଳି ଧରିବାକୁ ପଡିବ। ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ମହିଳାମାନେ ଅଧିକରୁ ଅଧିକ ଯୋଗଦାନ, ଆନ୍ଦୋଳନକୁ ପୁନଶ୍ଚ ଅଧିକ ଶକ୍ତିଶାଳୀ କରିବ। ମହିଳାମାନଙ୍କ ମୁକ୍ତି ଓ ସାମାଜିକ ଜୀବନର ସମସ୍ତ କ୍ଷେତ୍ରରେ ପୁରୁଷମାନଙ୍କ ସହିତ ସମାନ ମାନ୍ୟତା ପାଇଁ ମହିଳାମାନଙ୍କ ସାଧାରଣ ଆନ୍ଦୋଳନ ସହ ଟ୍ରେଡ ୟୁନିୟନ ଆନ୍ଦୋଳନକୁ ନିର୍ଣ୍ଣାୟକ ଭୂମିକା ପାଳନ କରିବାକୁ ପଡିବ।

## ଅଭିଶପ୍ତ ଶିଶୁ ଶ୍ରମିକ

ଶିଶୁ ଶ୍ରମିକ ସଂଖ୍ୟାରେ ଭାରତବର୍ଷ ଏକ ସର୍ବାଧିକ ଆଗୁଆ ଦେଶଭାବେ ବିଶ୍ୱସାରା ପରିଚିତ ଅଟେ। ଏହାର ଏକ ସଠିକ ସଂଖ୍ୟା ଓ ନିର୍ଦ୍ଦିଷ୍ଟ ପରିସର ଗୁଡିକର ଚିହ୍ନଟ ମଧ୍ୟ କଷ୍ଟସାଧ୍ୟ ଅଟେ। ପ୍ରାୟ ପାଖାପାଖି ୫ କୋଟି ଶିଶୁ ସ୍କୁଲରେ ପାଠ ପଢିବା ପରିବର୍ତ୍ତେ ସାମାନ୍ୟ ପାରିଶ୍ରମିକ ବାବଦରେ ଖଟୁଥିବା ଦେଖାଯାଇଥାଏ।

ଶିଶୁ ଶ୍ରମିକ ପ୍ରଥାର ବିଲୋପ ପାଇଁ ଶ୍ରମିକମାନଙ୍କ ମଧ୍ୟରେ ଦୃଢ ସଚେତନତା ସୃଷ୍ଟି ହେବା ଆବଶ୍ୟକ। ଏଥିପାଇଁ ଆଇ.ଏଲ୍.ଓ. ଅନେକ ଗୁଡିଏ ଯୋଜନାକୁ ପାଣ୍ଠି ଯୋଗାଉଛି। ଏହାସତ୍ତ୍ୱେ, ଆମର ଶିଳ୍ପ ଉଦ୍ୟୋଗ ଗୁଡିକରେ ଶିଶୁଶ୍ରମିକମାନଙ୍କ ସଂଖ୍ୟାରେ ଉଲ୍ଲେଖନୀୟ ହ୍ରାସ ହୋଇନାହିଁ।

ଦୁଇ ଦଶନ୍ଧି ପୂର୍ବେ ଭାରତ ସରକାର ବିପଦପୂର୍ଣ୍ଣ କାର୍ଯ୍ୟରେ ଶିଶୁ ଶ୍ରମିକ ନିଯୁକ୍ତିକୁ ନିଷେଧ କରି ଏକ ଆଇନ ପ୍ରଣୟନ କରିଥିଲେ। ଅଥଚ, ଆଇନଟି

ବାସ୍ତବରେ କାର୍ଯ୍ୟରେ ପରିଣତ ହୋଇନାହିଁ ଏବଂ ଗତ ଦୁଇ ଦଶନ୍ଧି ମଧ୍ୟରେ ବିପଦଜନକ କାର୍ଯ୍ୟରେ କାର୍ଯ୍ୟ କରୁଥିବା ଶିଶୁମାନଙ୍କ ସଂଖ୍ୟା ବୃଦ୍ଧି ପାଇଛି।

୨୦୧୨ ସୁଦ୍ଧା ବିପଦଜନକ ଶିଳ୍ପରେ ଶିଶୁ ଶ୍ରମିକ ନିଯୁକ୍ତିର ବିଲୋପ ସାଧନ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା। ଏହି ଲକ୍ଷ୍ୟ କିନ୍ତୁ ହାସଲ କରାଯାଇ ପାରିବନାହିଁ।

ଦାରିଦ୍ର୍ୟତାରୁ ହିଁ ଶିଶୁ ଶ୍ରମିକ ବ୍ୟବସ୍ଥାର ସୃଷ୍ଟି। ସମଗ୍ର ସମାଜ ମଧ୍ୟ ଏହାଯୋଗେ ପ୍ରଭାବିତ ଅଟେ। ଯେତେ ପର୍ଯ୍ୟନ୍ତ ସମାଜରେ ଦାରିଦ୍ର୍ୟତା ରହିଥିବ, ଶିଶୁ ଶ୍ରମିକ ଲୋପ ପାଇବ ନାହିଁ। ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ୍ ଏବଂ ଅନ୍ୟାନ୍ୟ ବିକଶିତ ଦେଶରେ ଏବେବି ଶିଶୁ ଶ୍ରମିକ ବ୍ୟବସ୍ଥା ପ୍ରଚଳିତ ରହିଥିବା ଦେଖାଯାଉଛି। ଆମ ଦେଶରେ ସର୍ବନିମ୍ନ ମଜୁରି ଏତେ କମ୍ ଯେ ପିତାମାତା ପିଲାମାନଙ୍କର ଭରଣପୋଷଣ ଓ ସେମାନଙ୍କୁ ଶିକ୍ଷିତ କରିବା କଷ୍ଟସାଧ୍ୟ ହୋଇଥାଏ। ଯେଉଁପର୍ଯ୍ୟନ୍ତ ଶ୍ରମିକମାନଙ୍କୁ ଆବଶ୍ୟକତା ଅନୁସାରେ ମଜୁରି (real based wages) ପ୍ରଦାନ ବାଧ୍ୟତାମୂଳକ ନହୋଇଛି ସେପର୍ଯ୍ୟନ୍ତ ଆଇନ ବଳରେ ଶିଶୁ ଶ୍ରମିକ ବ୍ୟବସ୍ଥା ପ୍ରଚଳନକୁ ରୁକି ହେବନାହିଁ।

ଶିଶୁଶ୍ରମିକମାନେ ଅତ୍ୟନ୍ତ ଅସହନୀୟ ପରିସ୍ଥିତିରେ କାର୍ଯ୍ୟ କରୁଛନ୍ତି। ଆବଶ୍ୟକ ମାନର ପୃଷ୍ଟିକାରକ ଖାଦ୍ୟରୁ ଶିଶୁଶ୍ରମିକମାନେ ବଞ୍ଚିତ। ଉକ୍ତ ବିଷୟଟି କାର୍ଯ୍ୟ ପରିବେଶ ସମ୍ପର୍କୀୟ ଅନୁଧ୍ୟାନରୁ ସ୍ପଷ୍ଟଭାବେ ଜଣାପଡିଥାଏ। ଶିଶୁ ଶ୍ରମିକ ବ୍ୟବସ୍ଥା ଜଣେ ଶିଶୁର ଉପଯୁକ୍ତ ଶାରୀରିକ ବିକାଶକୁ ବାଧା ଦେବା ସହ ଜୀବନ ସାରା ଭଗ୍ନ ସ୍ୱାସ୍ଥ୍ୟ ନେଇ ବଞ୍ଚିବାକୁ ବାଧ୍ୟ କରିଥାଏ। ଏହି କ୍ଷେତ୍ରରେ କନ୍ୟା ଶିଶୁମାନଙ୍କ ଅବସ୍ଥା ବାସ୍ତବରେ ଶୋଚନୀୟ ଅଟେ। ସେମାନେ ମାଲିକମାନଙ୍କ ଦ୍ୱାରା ଯୌନ ଶୋଷଣର ଶିକାର ହୋଇଥାନ୍ତି। ଖୁବ କମ୍ ବୟସରେ ହିଁ ସେମାନଙ୍କ ଜୀବନର ସମସ୍ତ ସ୍ୱପ୍ନ ଭାଙ୍ଗି ଚୁରମାର ହୋଇଥାଏ।

ମଧ୍ୟାହ୍ନଭୋଜନ ଯୋଜନା ନିଃସନ୍ଦେହଭାବେ ସ୍କୁଲରେ ପଢୁଥିବା ପିଲାମାନଙ୍କ ସଂଖ୍ୟା ବୃଦ୍ଧି କରିଛି। ଅଥଚ ଭୋଜନ ପ୍ରସ୍ତୁତିର ଘରୋଇକରଣ

ହେବାଦ୍ୱାରା ନୀତିହୀନ ଠିକାଦାରମାନଙ୍କ ଲାଭ ହୋଇଛି। ସେମାନେ ମଧ୍ୟାହ୍ନ ଭୋଜନର ପୁଷ୍ଟିଗତ ମାନ ଏବଂ ପରିମାଣକୁ କମ୍ କରିଦେଇଥାନ୍ତି। ସରକାର ଗରିବ ପିଲାମାନଙ୍କୁ ଉପଯୁକ୍ତ ପୋଷାକ ଏବଂ ଶିକ୍ଷା ଉପକରଣ ଯୋଗାଇବା ଦରକାର। ଏହାଫଳରେ ପ୍ରାଥମିକ ସ୍କୁଲ ଗୁଡିକରେ ଛାତ୍ର ସଂଖ୍ୟା ବୃଦ୍ଧି ପାଇପାରିବ।

ଶିଶୁ ଶ୍ରମିକମାନଙ୍କ ସମସ୍ୟା ଉପରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଅଧିକ ଧ୍ୟାନ ଦେବାକୁ ହେବ। ଶିଶୁ ଶ୍ରମିକର ପିତା ବା ମାତା ଟ୍ରେଡ୍ ୟୁନିୟନର ସଭ୍ୟ ହୋଇଥିବାରୁ ଏହି ପ୍ରଶ୍ନ ଟ୍ରେଡ୍ ୟୁନିୟନ ଲାଗି ସ୍ୱତନ୍ତ୍ରଭାବେ ଗୁରୁତ୍ୱପୂର୍ଣ୍ଣ ଅଟେ। ଶିଶୁ ଶ୍ରମିକ ପ୍ରଥା ବିଲୋପ ପାଇଁ ସଂଗ୍ରାମ ସାମଗ୍ରୀକଭାବେ ଶ୍ରମିକଶ୍ରେଣୀର ମଜୁରି ହାର ବୃଦ୍ଧି ଏବଂ ସମାଜରେ ଦାରିଦ୍ର୍ୟ ବିଲୋପ ପାଇଁ ଆନ୍ଦୋଳନ ସହିତ ଯୁକ୍ତ ହେବା ଦରକାର। ଭୋକିଲା ପିତାମାନଙ୍କୁ ଶିଶୁ ଶ୍ରମିକ ପ୍ରଥାର ଅମାନୁଷିକ ଯଥା ବର୍ବୋରୋଚିତ ବ୍ୟବସ୍ଥା ବିଷୟରେ ଭାଷଣ ଦେବାର ଅର୍ଥ କିଛି ହୁଏନାହିଁ। ପୁଅ ବା ଝିଅଙ୍କୁ ଦରିଦ୍ର ଅବସ୍ଥାରେ ରଖିବାକୁ କୌଣସି ବାପା ମା ଇଛା କରନ୍ତି ନାହିଁ। ଏପରି ଅବସ୍ଥା କେବଳ ଶୋଷଣ ଜର୍ଜରୀତ ସମାଜର ଉପୃତ୍ତି ଯେଉଁଠାରେ ଅଧିକାଂଶ ମଣିଷ ଅଳ୍ପ କେତେଜଣଙ୍କ ଦ୍ୱାରା ଶୋଷିତ ହୋଇଥାନ୍ତି। ଏପରି ଏକ ଏନ୍ତୁଡିଶାଳରେ ଶିଶୁ ଶ୍ରମିକ ବ୍ୟବସ୍ଥାର ଲାଳନପାଳନ ହୋଇଥାଏ।

ଯେତେଦିନ ପର୍ଯ୍ୟନ୍ତ ଆମ ସମାଜରେ ଶିଶୁ ଶ୍ରମିକମାନଙ୍କ ଦୁଃଖ ଦୁର୍ଦ୍ଦଶା ରହିଛି, ଧନୀକମାନଙ୍କ ଆକଣ୍ଠ ଉପଭୋଗ ଅସାମାଜିକ କାର୍ଯ୍ୟଭାବେ ବିବେଚିତ ହେବା ଉଚିତ। କିନ୍ତୁ ଆମ ସମାଜରେ ସେମାନେ ସବୁଠାରୁ ସମ୍ମାନିତ ମଣିଷ।

## ଆଇ.ଟି ସେକ୍ଟର କ୍ଷେତ୍ରରେ ଜଘନ୍ୟ ଅବସ୍ଥା

ଭାରତର ଆଇ.ଟି. କ୍ଷେତ୍ର ଦ୍ରୁତ ବେଗରେ ବିକାଶ ଲାଭ କରିଛି। ଏଠାରେ ପ୍ରାୟ ୧୫ ଲକ୍ଷ ଶ୍ରମିକ କାମ କରିଥାନ୍ତି। ଏକ ଆକଳନ ଅନୁସାରେ ପରବର୍ତ୍ତୀ ୩/୪ ବର୍ଷ ମଧ୍ୟରେ ଏହି ସଂଖ୍ୟା ୨୦/୨୫ ଲକ୍ଷକୁ ବୃଦ୍ଧି ପାଇବ।

ଭି.ଭି. ଗିରି ଜାତୀୟ ଶ୍ରମ ସଂସ୍ଥାନ ଦ୍ୱାରା କରାଯାଇଥିବା ଏକ ଅଧ୍ୟୟନ ଅନୁସାରେ ରାଜଧାନୀ ନିକଟସ୍ଥ ନୋଇଡା ସହରର ଜଘନ୍ୟ ପରିସ୍ଥିତି ହେଉଛି ଏକ ସର୍ବସାଧାରଣ ବିଷୟ। ଉନବିଂଶ ଶତାବ୍ଦୀର ଜେଲଖାନା ସହିତ ଏହାକୁ ତୁଳନା କରାଯାଇଛି। ଏହି ଅଧ୍ୟାୟରେ ଉଲ୍ଲେଖ କରିଛି ଯେ ଆଇ.ଟି. ସେକ୍ଟରର କର୍ମଚାରୀମାନେ ରୋମାନ ଗୋଲାମ ପ୍ରଥା ଭଳି ଜଘନ୍ୟ ଅବସ୍ଥା ଭିତରେ ଜୀବନ ଯାପନ କରୁଛନ୍ତି। କର୍ମଚାରୀମାନେ ସେଠାରେ ୨ ଟି ସିଫ୍ଟରେ କାମ କରିଥାନ୍ତି ଅର୍ଥାତ ସେମାନଙ୍କୁ ଦୈନିକ ୧୨ ଘଣ୍ଟାରୁ ଅଧିକ ସମୟ କାର୍ଯ୍ୟ କରିବାକୁ ପଡିଥାଏ। ବଡ କମ୍ପାନୀମାନେ ଅପେକ୍ଷାକୃତ ଉତ୍ତମ ଦରମାହାର ଦେଉଥିଲେ ମଧ୍ୟ କାର୍ଯ୍ୟଭାର ଅତି ଅଧିକ। କିନ୍ତୁ କଲ୍ ସେଣ୍ଟର ଗୁଡିକରେ କର୍ମଚାରୀମାନେ କମ୍ ଦରମା ପାଇଥାନ୍ତି। କମ୍ପ୍ୟୁଟର ପରଦା ଉପରେ ଅବିଚଳ ନଜର ରଖିବା ଯୋଗୁଁ ମନିଟରରୁ ନିର୍ଗତ ବିଦ୍ୟୁତ ପ୍ରବାହ ଯଥା ଇଲେକ୍ଟ୍ରୋନ୍ ଧାରା କର୍ମଚାରୀମାନଙ୍କର ଆଖି ଉପରେ କୁପ୍ରଭାବ ପକାଇଥାଏ। ଏହି କ୍ଷେତ୍ରରେ କର୍ମଚାରୀମାନେ ବାରମ୍ବାର ଦୃଷ୍ଟିହୀନତା ନେଇ ଅଭିଯୋଗ କରିଥାନ୍ତି। ଗର୍ଭବତୀ ମହିଳାମାନେ କମ୍ପ୍ୟୁଟରରେ କାମ କରିବା ଉଚିତ ନୁହେଁ କାରଣ ଛୋଟ ଶିଶୁର ସ୍ୱାସ୍ଥ୍ୟ ଉପରେ ଏହା ପ୍ରତିକୂଳ ପ୍ରଭାବ ପକାଇଥାଏ। ଅଷ୍ଟ୍ରେଲିଆର ଟ୍ରେଡ୍ ୟୁନିୟନମାନେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି।

ମସ୍ତିଷ୍କ ଉପରେ ଅତ୍ୟାଧିକ ଚାପ ଯୋଗୁଁ କର୍ମଚାରୀମାନେ ଚିଡିଚିଡା ସ୍ୱଭାବର ହୋଇଥାନ୍ତି ଏବଂ ରାତ୍ରିକାଳୀନ ସିଫ୍ଟରେ କ୍ରମାଗତ ଭାବେ କାର୍ଯ୍ୟକରି କର୍ମଚାରୀମାନଙ୍କ ପାରିବାରିକ ଜୀବନ ବିପର୍ଯ୍ୟସ୍ତ ହୋଇଯାଉଛି।

ଆଇ.ଟି. ସେକ୍ଟର କର୍ମଚାରୀମାନଙ୍କ ଚାକିରୀ ହେଉଛି ନିରାପତ୍ତବିହୀନ। ଅନେକ ସମୟରେ ବିନା ନୋଟିସରେ କର୍ମଚାରୀମାନଙ୍କୁ ବରଖାସ୍ତ କରାଯାଏ। ଦରମା ହାର ଏବଂ କାର୍ଯ୍ୟ ସର୍ତ୍ତାବଳୀରେ କୌଣସି ସମାନତା ଦେଖିବାକୁ ମିଳେନାହିଁ। ଆଇ.ଟି. କ୍ଷେତ୍ରରେ କର୍ମଚାରୀମାନଙ୍କ ସ୍ୱାସ୍ଥ୍ୟଗତ କ୍ଷୟକ୍ଷତି ମଧ୍ୟ ସର୍ବାଧିକ ଅଟେ।

ସୂଚନା ପ୍ରଯୁକ୍ତି କ୍ଷେତ୍ରରେ ମ୍ୟାନେଜମେଣ୍ଟ ଟ୍ରେଡ ୟୁନିୟନ ଗଠନ ପାଇଁ ଅନୁମତି ଦେଉନାହାନ୍ତି। କେବଳ ମାତ୍ର ୟୁନିୟନ ତିଆରି ବା ମ୍ୟାନେଜମେଣ୍ଟ ପାଖରେ କର୍ମଚାରୀମାନଙ୍କ ସମସ୍ୟାକୁ ଟେକି ଧରିବାକୁ ଅନେକ କର୍ମଚାରୀଙ୍କୁ ବରଖାସ୍ତ ନୋଟିସର ସାମନା କରିବାକୁ ପଡିଛି। କାର୍ଯ୍ୟ ସର୍ତ୍ତାବଳୀ/କାର୍ଯ୍ୟ ପରିବେଶରେ ଉନ୍ନତି ଦାବିରେ ମ୍ୟାନେଜମେଣ୍ଟକୁ ସାମୂହିକ ନିବେଦନ କରି ଦଣ୍ଡିତ ହୋଇଥିବାର ଘଟଣା ମଧ୍ୟ ବହୁଳ।

ଭାରତରେ ମଜୁରି ଯୁକ୍ତରାଷ୍ଟ୍ର ଆମେରିକା ପରି ବିକାଶଶୀଳ ଦେଶର ଶ୍ରମିକମାନଙ୍କୁ ମିଳୁଥିବା ମଜୁରି ଠାରୁ ଦଶଭାଗରୁ ଭାଗେ ହୋଇଥିବାରୁ ବିକାଶଶୀଳ ଦେଶଠାରୁ ଅନେକ କାର୍ଯ୍ୟ ଭାରତୀୟ ଆଇ.ଟି. ସେକ୍ଟରକୁ ଆସୁଛି।

ସୂଚନା ପ୍ରଯୁକ୍ତି କ୍ଷେତ୍ରର କର୍ମଚାରୀଙ୍କର କାର୍ଯ୍ୟ ଏବଂ ଜୀବନଧାରଣର ଶୈଳୀକୁ ବିଧିଗତଭାବେ ସଂଗଠିତ କରିବା ପାଇଁ ଆଇନ ପ୍ରଣୟନ କରିବା ଆବଶ୍ୟକ। ଏଥିପାଇଁ ମୋ ସଂଗଠନ କେନ୍ଦ୍ର ସରକାରଙ୍କୁ ଅନେକଥର ଚିଠି ଲେଖିଛି। କୌଣସି ପ୍ରକାର ଆଇନଗତ ପଦ୍ଧତି ଆଇ.ଟି. ସେକ୍ଟର କ୍ଷେତ୍ରରେ କରିବ, ତେଣୁ ସରକାର ଏପରି ଦାବିକୁ ପ୍ରତ୍ୟାଖ୍ୟାନ କରିଛନ୍ତି।

ନିଜ ନିଜ ରାଜ୍ୟରେ କାର୍ଯ୍ୟ ଆରମ୍ଭ କରିବାକୁ ଆଇ.ଟି. କମ୍ପାନୀକୁ ପ୍ରୋତ୍ସାହିତ କରିବା ପାଇଁ କେତେକ ରାଜ୍ୟ ସରକାର ସୂଚନା ପ୍ରଯୁକ୍ତି କ୍ଷେତ୍ରରେ ମ୍ୟାନେଜମେଣ୍ଟକୁ ଅତ୍ୟଧିକ ରିହାତି ପ୍ରସ୍ତାବ ଦେଉଛନ୍ତି। ଫଳରେ ବିଭିନ୍ନ ରାଜ୍ୟ ସରକାରମାନଙ୍କ ମଧ୍ୟରେ ଆଇ.ଟି. ସେକ୍ଟରକୁ ରିହାତି ଦେବା ପାଇଁ ପ୍ରତିଯୋଗିତା ଚାଲିଛି। ପ୍ରକୃତରେ ଏହା ଫଳରେ ଶ୍ରମିକମାନେ ଅବହେଳିତ ହେଉଛନ୍ତି। ଏହି କ୍ଷେତ୍ରରେ କର୍ମଚାରୀମାନଙ୍କର ଉପଯୁକ୍ତ କାର୍ଯ୍ୟ ସର୍ତ୍ତାବଳୀର ସୁନିଶ୍ଚିତତା ଏବଂ ୟୁନିୟନ ଆନ୍ଦୋଳନକୁ ସଠିକ ମାର୍ଗରେ ଆଗେଇ ନେବାକୁ ପଡିବ।

ସେହିପରି ଭାବରେ ଏକ୍ସପୋର୍ଟ ପ୍ରୋସେସିଂ ଜୋନ୍ସ ବା ସ୍ପେଶିଆଲ ଇକୋନୋମିକ୍ ଜୋନ୍ସରେ କାର୍ଯ୍ୟ କରୁଥିବା ଶ୍ରମିକମାନେ ସମସ୍ତ ଶ୍ରମ ଆଇନର ସୁବିଧା ସୁଯୋଗରୁ ବଞ୍ଚିତ ହେଉଛନ୍ତି। କେତେକ ରାଜ୍ୟ ସରକାର ଶ୍ରମ ଆଇନର

ପରିସୀମା ମଧ୍ୟରୁ ଏସ୍.ଇ.ଜେଡ୍ କୁ ବାଦ ଦେଇଥିବା ଖୋଲାଖୋଲିଭାବେ ଘୋଷଣା କରିଛନ୍ତି। ଶ୍ରମ ଆଇନ ସଂକ୍ରାନ୍ତୀୟ ବିଷୟରେ ନିଷ୍ପତି ନେବାର କ୍ଷମତା ସରକାରମାନେ ଅର୍ପଣ କରିଛନ୍ତି ଡେଭଲପମେଣ୍ଟ କମିଶନରଙ୍କୁ। ସି.ଆଇ.ଟି.ୟୁ. ଏହାକୁ ସମାଲୋଚନା କରିଛି ଏବଂ ଆଇ.ଏଲ୍.କୁ ଅଭିଯୋଗ ମଧ୍ୟ କରିଛି। ଶିଳ୍ପ ସମସ୍ୟାର ପରିଚାଳନା କରିବା ପାଇଁ ସ୍ୱାଧୀନ କାର୍ଯ୍ୟ ସମ୍ପର୍କରେ ଆଇ.ଏଲ୍.ଓ. ସୁପାରିଶ କରିଥିଲେ କିନ୍ତୁ ଭାରତ ସରକାର ଏପରି ସୁପାରିଶକୁ (Convention) ଅଦ୍ୟାବଧି ଗ୍ରହଣ କରିନାହାନ୍ତି।

ଏସ୍.ଇ.ଜେଡ୍ ର ଶ୍ରମିକମାନଙ୍କୁ ୟୁନିୟନ ଗଠନ କରିବାକୁ ଅନୁମତି ଦିଆଯାଉନାହିଁ ଏବଂ ଶୋଷଣକୁ ଶ୍ରମିକ ବିରୋଧ କଲେ ସେମାନଙ୍କୁ ଚାକିରୀରୁ ବହିଷ୍କାର କରାଯାଇଥାଏ। ସେସବୁ ସ୍ଥାନରେ କାର୍ଯ୍ୟ ସର୍ତ୍ତାବଳୀ ଅତ୍ୟନ୍ତ ଖରାପ ଏବଂ ଅମାନୁଷିକ ଅଟେ।

ଏସ୍.ଇ.ଜେଡ୍.କୁ ଶ୍ରମ ଆଇନ ପରିସରଭୁକ୍ତ କରିବା ଏବଂ ସେଠାରେ ଟ୍ରେଡ୍ ୟୁନିୟନ ଗଠନ ପାଇଁ ସରକାରଙ୍କ ନିକଟରେ ସମସ୍ତ ଟ୍ରେଡ୍ ୟୁନିୟନମାନେ ଦାବି କରିଥିଲେ ମଧ୍ୟ ଏହା ଗୃହୀତ ହୋଇନାହିଁ। ସେଠାରେ କେବଳ କମ୍ପାନୀର ପୋଷା ୟୁନିୟନ୍ ଗୁଡ଼ିକୁ କାର୍ଯ୍ୟ କରିବା ପାଇଁ ଅନୁମତି ମିଳିଥାଏ। ଏହା ଟ୍ରେଡ୍ ୟୁନିୟନ ଆନ୍ଦୋଳନ ପ୍ରତି ବିଦ୍ରୁପ ବ୍ୟତୀତ ଅନ୍ୟକିଛି ନୁହେଁ।

## ତୃତୀୟ ଭାଗ

## ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଭବିଷ୍ୟତ

### ଟ୍ରେଡ୍ ୟୁନିୟନମାନଙ୍କର କନଫେଡେରେସନ ଗଠନ

ଆମେ ଆଗରୁ ଉଲ୍ଲେଖ କରିଛୁ ଯେ ବର୍ତ୍ତମାନ ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ଅନୈକ୍ୟ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ସାମୂହିକ ମୂଲଚାଲ କ୍ଷମତାକୁ ଅତ୍ୟଧିକ କ୍ଷତିଗ୍ରସ୍ତ କରୁଛି। ତେଣୁ ଶ୍ରମିକଶ୍ରେଣୀ ଏବଂ ଟ୍ରେଡ୍ ୟୁନିୟନ

ଆନ୍ଦୋଳନର ଅଗ୍ରଗତି ପାଇଁ ସାଧାରଣ ନୀତି ଆଧାରର ଜରୁରୀ ଆବଶ୍ୟକତା ରହିଛି । ଅତୀତରେ କେତେକ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନର ମିଶ୍ରଣ ପାଇଁ ପଦକ୍ଷେପ ନେଇ ବିଫଳ ପ୍ରମାଣିତ ହୋଇଛନ୍ତି। ଏ.ଆଇ.ଟି.ୟୁ.ସି., ଏଚ୍.ଏମ୍.ଏସ୍. ଓ ଆଇ.ଏନ୍.ଟି.ୟୁ.ସି. ମଧ୍ୟରେ ମିଶ୍ରଣ ପାଇଁ ଆଲୋଚନା ସଫଳ ହୋଇନାହିଁ। ଏହା ସ୍ପଷ୍ଟଭାବେ ଦର୍ଶାଏ ଯେ ବର୍ତ୍ତମାନ ଭାରତୀୟ ପରିସ୍ଥିତି ପରିପ୍ରେକ୍ଷୀରେ ଟ୍ରେଡ୍ ୟୁନିୟନମାନଙ୍କର ମିଶ୍ରଣ ସମ୍ଭବ ନୁହେଁ। ତେଣୁ ଆଦର୍ଶଗତ ସହବନ୍ଧନ ନିର୍ବିଶେଷରେ ଗୋଟିଏ ମଞ୍ଚରେ ସମସ୍ତ ଟ୍ରେଡ୍ ୟୁନିୟନମାନେ ଏକାଠି ହେବାପାଇଁ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥାର ଆବଶ୍ୟକ ରହିଛି। ଶ୍ରମିକମାନଙ୍କର ଆଦର୍ଶଗତ ବନ୍ଧନ ଯଥା ବିଭିନ୍ନତା ଅବଶ୍ୟ ସ୍ୱାଗତଯୋଗ୍ୟ କିନ୍ତୁ ଏହା ଶ୍ରମିକମାନଙ୍କର ଜୀବନ ଜୀବିକା ଉପରେ ସଂଗଠିତ ଆକ୍ରମଣ ବିରୁଦ୍ଧରେ ସାଧାରଣ ସଂଗ୍ରାମ ପ୍ରତି ଆଦୌ ଗ୍ରହଣଯୋଗ୍ୟ ନୁହେଁ।

ଟ୍ରେଡ ୟୁନିୟନମାନଙ୍କର କନଫେଡେରେସନ ଗଠନ ଶ୍ରମିକଶ୍ରେଣୀ ସମ୍ମୁଖୀନ ହେଉଥିବା ସାଧାରଣ ସମସ୍ୟା ଭିତ୍ତିରେ ମିଳିତ ମଞ୍ଚରେ ଏକତ୍ରିତ ହେବା ଟ୍ରେଡ୍ ୟୁନିୟନମାନଙ୍କର ଏକ ମଧ୍ୟବର୍ତ୍ତୀକାଳୀନ ମାର୍ଗ ହୋଇପାରିବ। କନଫେଡେରେସନର ନିଷ୍ପତି ବହୁମତରେ ନହୋଇ ସର୍ବସମ୍ମତ୍ତ ବା ଐକ୍ୟମତ ଭିତ୍ତିରେ ହେବା ଉଚିତ। କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ଆଲୋଚନା ଜରିଆରେ ଗୋଟିଏ କନଫେଡେରେସନ ହିଁ ଏକମତ ହୋଇଥିବା ନିଷ୍ପତ୍ତି ଭିତ୍ତିରେ ନୀତି ଗ୍ରହଣ କରିପାରେ, ଯେତେବେଳେ କି ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ମତଭେଦ ଥିବା ପ୍ରଶ୍ନରେ ଆଲୋଚନା ଜାରି ରଖାଯାଇ ପାରିବନାହିଁ। ଏହି ପଥରେ ସମସ୍ତଙ୍କ ଗ୍ରହଣଯୋଗ୍ୟ ସାଧାରଣ ବିଷୟରେ ଆନ୍ଦୋଳନ ପାଇଁ ଦୃଢଭାବେ ଚେଷ୍ଟା କରିବାକୁ ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ସାଧାରଣ ବୁଝାମଣାର ସ୍ୱାଭାବିକ ବିକାଶ ପାଇଁ ଉପାୟ ବାହାରିପାରିବ। ଅତ୍ୟାବଶ୍ୟକ ସାମଗ୍ରୀର ଦରବୃଦ୍ଧି, ବର୍ଦ୍ଧିତ ବେକାରୀ ଏବଂ ବେକାରମାନଙ୍କୁ ରିଲିଫ୍ ପରିସରଭୁକ୍ତ

କରିବାର ଆବଶ୍ୟକତା, ଶ୍ରମ ଆଇନ କାର୍ଯ୍ୟକାରୀ ନହେବା ଏବଂ ଏହାର ସଠିକ କାର୍ଯ୍ୟକାରୀତା ପାଇଁ ପଦକ୍ଷେପ, ଅସଂଗଠିତ ଶ୍ରମିକମାନଙ୍କ ପାଇଁ ଉପଯୁକ୍ତ ସାମାଜିକ ସ୍କିମ୍ ଏବଂ ଲାଭଦାୟକ ରାଷ୍ଟ୍ରାୟତ୍ତ ଶିଳ୍ପ ଗୁଡିକରୁ ପୁଞ୍ଜି ପ୍ରତ୍ୟାହାର ଅବିଳମ୍ବେ ବନ୍ଦ କରିବା ଇତ୍ୟାଦି ପ୍ରସଙ୍ଗ ଗୁଡିକ ଶ୍ରମିକଶ୍ରେଣୀର ନଗଦ ପ୍ରସଙ୍ଗ ଭାବେ ଗ୍ରହଣ କରାଯାଇଛି । ଏହା ଉପରେ ୨୦୦୯ ସେପ୍ଟେମ୍ବର ମାସ ୧୪ ତାରିଖ ଦିନ ଦିଲ୍ଲୀଠାରେ ମିଳିତ ଟ୍ରେଡ୍ ୟୁନିୟନ ବୁଝାମଣାକ୍ରମେ ୨୮ ଅକ୍ଟୋବର ୨୦୦୯ ଦିନ ରାଷ୍ଟ୍ରୀୟ ପ୍ରତିବାଦ ଦିବସ ପାଳିତ ହୋଇଥିଲା ଏବଂ ପାର୍ଲିଆମେଣ୍ଟର ଶୀତକାଳୀନ ଅଧିବେଶନ ସମୟରେ ଶ୍ରମିକମାନଙ୍କର ଦିଲ୍ଲୀ ଅଭିଯାନ ସଂଗଠିତ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ପ୍ରକୃତରେ ଏହା ମିଳିତ ଟ୍ରେଡ୍ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଅଗ୍ରଗତି ଅଟେ । ଏଥିପୂର୍ବରୁ ତଳସ୍ତରରେ ଗଢି ଉଠୁଥିବା ଟ୍ରେଡ୍ ୟୁନିୟନ ଏକତା ବିଷୟରେ ଆଲୋଚନା କରାଯାଇଛି । ଏହା ଏପରି ଏକ ପଦକ୍ଷେପ ଯାହାଫଳରେ ସାଧାରଣ ଶ୍ରମିକମାନଙ୍କ ମଧ୍ୟରେ ଗଭୀର ଆତ୍ମବିଶ୍ୱାସ ସୃଷ୍ଟି କରିପାରିଥିଲା । ଅତଏବ, ଆମେ ଏହି ସମସ୍ତ କାରଣରୁ ଟ୍ରେଡ୍ ୟୁନିୟନମାନଙ୍କର ସର୍ବଭାରତୀୟ ସ୍ତରରେ ମହାସମନ୍ୱୟ ସମିତି ଗଠନକୁ ଉଚିତ ପଦକ୍ଷେପଭାବେ ବିଚାରକୁ ନେଇଛୁ ଏବଂ ଆମର ବିଶ୍ୱାସ ଏହାଫଳରେ ଶ୍ରମିକମାନଙ୍କ ମଧ୍ୟରେ ମାଲିକମାନଙ୍କ ସହ ନିଜ ଦାବିଦୁବା ଗୁଡିକୁ ନେଇ ମୂଲଚାଲ କରିବା କ୍ଷମତା ନିଶ୍ଚିତଭାବେ ବୃଦ୍ଧି ପାଇବ ।

ଏହି ପରିପ୍ରେକ୍ଷୀରେ କନଫେଡେରେସନ ସହ ସାମିଲ ଶ୍ରମିକମାନେ ନିଜ ଇଚ୍ଛାମତେ ଯେକୌଣସି ରାଜନୈତିକ ଦଳର ସଭ୍ୟ ପଦ ଗ୍ରହଣ ପାଇଁ ସ୍ୱାଧୀନ ରହିବେ ଏବଂ କନଫେଡେରେସନ୍ ଏଠାରେ ଶ୍ରମିକଶ୍ରେଣୀର ସାଧାରଣ ପ୍ରସଙ୍ଗ ଗୁଡିକୁ ନେଇ ଆନ୍ଦୋଳନ ସଂଗଠିତ କରିପାରିବ । ଏପରିବି ସମୟ ଆସିପାରେ, ଯେତେବେଳେ ସମଗ୍ର ଶ୍ରମିକଶ୍ରେଣୀକୁ କୌଣସି ନା କୌଣସି ରାଜନୈତିକ ଆଭିମୁଖ୍ୟ ଗ୍ରହଣ କରିବା ଅପରିହାର୍ଯ୍ୟ ହୋଇପଡିବ । କିନ୍ତୁ ସେତେବେଳେ, କନଫେଡେରେସନ୍‌ରେ ରହି ଶ୍ରମିକମାନେ ଏପରି ପ୍ରସଙ୍ଗ ଉପରେ, ସହମତି ଭିତ୍ତିରେ ନିଷ୍ପତ୍ତି ଗ୍ରହଣ କରିପାରିବେ । ଏତଦ୍‌ବ୍ୟତୀତ,

କନଫେଡେରେସନ୍ ହିଁ ବିଭିନ୍ନ ଶିଳ୍ପଭିତ୍ତିକ ଫେଡେରେସନ୍ ଗୁଡିକୁ ସାଧାରଣ ମଞ୍ଚ ଉପରେ ଏକଜୁଟ କରିପାରିବ ଏବଂ ଅସଂଗଠିତ ଓ ଗ୍ରାମାଞ୍ଚଳର ଶ୍ରମିକମାନଙ୍କୁ ଟ୍ରେଡ୍ ୟୁନିୟନ ମଞ୍ଚ ଆଡେ ଆକର୍ଷିତ କରିପାରିବ। ନିକଟ ଅତୀତରେ, ବିଭିନ୍ନ ଶିଳ୍ପଭିତ୍ତିକ ଟ୍ରେଡ୍ ୟୁନିୟନ ଫେଡେରେସନ୍‌ମାନେ ଐକ୍ୟବଦ୍ଧ ସଂଗ୍ରାମ ଉତ୍କୃଷ୍ଟ ଉଦାହରଣ ଉପସ୍ଥାପିତ କରିପାରିଛନ୍ତି। ଏହିସବୁ ଆନ୍ଦୋଳନ ଗୁଡିକ ଶ୍ରମିକମାନଙ୍କ ସାଧାରଣ ପ୍ରସଙ୍ଗ ଉପରେ ଗଢି ଉଠିଥିଲା।

ଶ୍ରମିକ ସଂଗଠନ ଗୁଡିକ ମଧ୍ୟରେ ଆତ୍ମବିଶ୍ୱାସ ସୃଷ୍ଟି କରିପାରିଲେ, କ୍ରମେ ଆଞ୍ଚଳିକ ଓ ସ୍ଥାନୀୟ ସ୍ତରରେ ଟ୍ରେଡ୍ ୟୁନିୟନମାନଙ୍କୁ ଐକ୍ୟବଦ୍ଧ କରିବା ସହଜ ହୋଇପାରିବ ଏବଂ ଛୋଟ ଛୋଟ ୟୁନିୟନମାନେ ପର୍ଯ୍ୟାୟକ୍ରମେ ନିଜକୁ ବଡ ବଡ ୟୁନିୟନ ସହ ସାମିଲ କରିନେଇପାରିବେ। ସର୍ବୋପରି ଶ୍ରମିକମାନଙ୍କ ଭିତରେ କୌଣସି ପ୍ରସଙ୍ଗ ଉପରେ ଗୁପ୍ତ ଭୋଟ ଜରିଆରେ ନିଷ୍ପତ୍ତି ଗ୍ରହଣ କରାଯାଇ ପାରିବ।

ଟ୍ରେଡ୍ ୟୁନିୟନମାନଙ୍କୁ ନେଇ ସର୍ବଭାରତୀୟ ସ୍ତରରେ କନଫେଡେରେସନ୍ ଗଠନ ଆଗେଇ ପାରିଲେ, ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ଗଣତାନ୍ତ୍ରିକ ପରିଚାଳନା ମଧ୍ୟ ଶକ୍ତିଶାଳୀ ହୋଇପାରିବ। ଟ୍ରେଡ୍ ୟୁନିୟନ କନଫେଡେରେସନ୍ ଗଠନ ପଥରେ ବହୁ ବାଧାବିଘ୍ନ ଏବେ ବି ରହିଛି କିନ୍ତୁ ଉପଯୁକ୍ତ ଆଲୋଚନା ମାଧ୍ୟମରେ ଏଥିପାଇଁ ମାନସିକତାକୁ ଆଗେଇ ନିଆଯାଇ ପାରିବ। ଟ୍ରେଡ୍ ୟୁନିୟନମାନଙ୍କ ମଧ୍ୟରେ ସାଧାରଣ ବୁଝାମଣା ସର୍ବସମ୍ମତ ସ୍ତରରେ ଉପନିତ ହେଲେ ହିଁ କନଫେଡେରେସନ୍ ଗଠନ ସମ୍ଭବପର। ସେତେବେଳେ ହିଁ ଟ୍ରେଡ୍ ୟୁନିୟନମାନେ ଉପସ୍ଥିତ ପରିସ୍ଥିତି ଅନୁସାରେ ନିଜକୁ ଏକଜୁଟ୍ କରିପାରିବେ ଏବଂ ଏକତା ଗଠନର ନୂଆ ଇତିହାସ ସୃଷ୍ଟି କରିବେ।

ସାମ୍ରାଜ୍ୟବାଦୀ ଜଗତିକରଣ ବିରୁଦ୍ଧରେ ଟ୍ରେଡ୍ ୟୁନିୟନମାନେ ପୂର୍ବାପେକ୍ଷା ଅନେକ ଅଧିକ ଅପ୍ରାସଙ୍ଗିକ ବୋଲି ସାମ୍ରାଜ୍ୟବାଦୀ ଜଗତିକରଣର ପ୍ରବକ୍ତାମାନେ ପ୍ରଚାର କରିଥାନ୍ତି। ଏପରି ଅବସ୍ଥାରେ ଭାରତବର୍ଷରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଐକ୍ୟବଦ୍ଧ ହେଲେ ହିଁ ଏହାର ପ୍ରାସଙ୍ଗିକତା ନିଶ୍ଚିତଭାବେ ପ୍ରମାଣ ହୋଇପାରିବ।

## ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ

ଆଜି ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଢି ତୋଳିବା ଲକ୍ଷ୍ୟରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ବିକାଶ ଘଟାଇବା ଆବଶ୍ୟକ। ସେଥିପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପମାନ ସମସ୍ତଙ୍କ ପକ୍ଷରୁ ଗ୍ରହଣ କରାଗଲେ ହିଁ ପରିଶେଷରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ଏକତାବଦ୍ଧ କରିହେବ। ଏହି ଲକ୍ଷ୍ୟ କିନ୍ତୁ ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ଗଣତନ୍ତ୍ର ପ୍ରତିଷ୍ଠା ବିନା ଅସମ୍ଭବ। ବହୁ ଟ୍ରେଡ୍ ୟୁନିୟନ ଗଣତାନ୍ତ୍ରିକ ପରିଚାଳନା ଅଭାବରେ ହିଁ ବିଭାଜିତ ହୋଇଥିବା ଦେଖାଯାଇଥାଏ। ଦୁର୍ଭାଗ୍ୟବଶତଃ, ବ୍ୟକ୍ତିସର୍ବସ୍ୱ ଟ୍ରେଡ୍ ୟୁନିୟନ ଗଢିତୋଳି ନିଜର ସ୍ୱାର୍ଥ ହାସଲ କରିବା ଏକ ଝୁଙ୍କ୍‌ରେ ପରିଣତ ହୋଇଛି। ଏପରି ନେତାମାନେ ସଦାସର୍ବଦା ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଢି ତୋଳିବାକୁ ବିରୋଧ କରିଥାନ୍ତି। ଏଣୁ ସବୁ ସ୍ତରରେ ଏଥିପାଇଁ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଢି ତୋଳିବା ଚେତନା ଶ୍ରମିକଶ୍ରେଣୀ ମଧ୍ୟରେ ବିକାଶଲାଭ କରିବା ଉଚିତ। ଏମିତିବି, କେତେକ ସେକ୍ଟରରେ ଶ୍ରମିକମାନଙ୍କ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଏକକଭାବେ ରହିଥିବା ଦେଖାଯାଇଥାଏ। ଅତଏବ, ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଢି ତୋଳିଲେ ଭାରତବର୍ଷର ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ଦୁଃଖଦାୟକ ବିଭାଜନର ଅବସାନ ଘଟିପାରିବ। ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଢିବା ଥରେ ସ୍ୱୀକୃତ ହେବାମାତ୍ରେ, ଏଥିପାଇଁ ଆବଶ୍ୟକ ପଦ୍ଧତି ଗଣତାନ୍ତ୍ରିକ ପଦ୍ଧତିରେ ସମସ୍ତେ ମିଳିମିଶି ଖୋଜିନେଇ ପାରିବେ। ଏପରି କ୍ଷେତ୍ରରେ ଏକତ୍ର ହେଉଥିବା ସମସ୍ତ ଗୋଷ୍ଠୀ, ଛୋଟ ହୁଅନ୍ତୁ ବା ବଡ, ସମାନ ମର୍ଯ୍ୟାଦା ହାସଲ କଲେ ହିଁ ଐକ୍ୟବଦ୍ଧ ପ୍ରକ୍ରିୟା ଆଗେଇ ଯାଇପାରିବ। ପ୍ରତ୍ୟେକ ଗୋଷ୍ଠୀ ନିଜ ନିଜର ଆନୁପାତିକ ପ୍ରତିନିଧିତ୍ୱ ମାଧ୍ୟମରେ ଉଚିତ ମର୍ଯ୍ୟାଦା ହାସଲ କରିପାରିବେ ଏବଂ କୌଣସିମତେ ବଡ କୌଣସି ଗୋଷ୍ଠୀର ଚାପରେ ପଡିବେନାହିଁ।

ଆମ ଦେଶର ଶ୍ରମିକ ଆନ୍ଦୋଳନ କ୍ଷେତ୍ରରେ, ତଳସ୍ତରରେ ଶ୍ରମିକ ଓ

ସାଧାରଣ କ୍ୟାଡରମାନଙ୍କ ମଧ୍ୟରେ ଏକତା ସପକ୍ଷରେ ପ୍ରବଳ ମାନସିକତା ରହିଛି। ମନଭିତରେ ସମସ୍ତେ ଶ୍ରମିକ ଆନ୍ଦୋଳନର ଐକ୍ୟବଦ୍ଧ ଚେହେରାକୁ ଭଲ ପାଇଥାନ୍ତି ଏବଂ ଇଚ୍ଛା କରିଥାନ୍ତି, କୌଣସିମତେ ଏକତାବଦ୍ଧ ଟ୍ରେଡ୍ ୟୁନିୟନଟିଏ ଗଢି ଉଠୁ। ସାଧାରଣ ଶ୍ରମିକମାନଙ୍କ ମଧ୍ୟରେ ରହିଥିବା ଏପରି ମାନସିକତାକୁ ଅବଲମ୍ବନ କରି ଟ୍ରେଡ୍ ୟୁନିୟନ ଏକତା ଓ ସଂଘର୍ଷକୁ ଆଗେଇ ନିଆଯାଇ ପାରିବ। ପରିଶେଷରେ, ଉକ୍ତ ପ୍ରକ୍ରିୟା ଭିତରଦେଇ ଭାରତବର୍ଷର କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ ସଂଗଠନଭାବେ ଏକ ଐକ୍ୟବଦ୍ଧ ସଂଗଠନ ଗଢି ଉଠିବ।

## ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟକଳାପ କ୍ଷେତ୍ରରେ ଟ୍ରେଡ୍ ୟୁନିୟନର ଭୂମିକା

କେବଳ ମୂଲମଜୁରି ଦାବି ଭିତରେ ନିଜକୁ ସୀମାବଦ୍ଧ ରଖି ଶ୍ରମିକ ଶ୍ରେଣୀର ଚେତନା ସ୍ତରରେ ଉନ୍ନତି ବିଧାନ କରାଯାଇ ପାରିବ। ଏଣୁ, ଆଜି ଦିନରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ସାଂସ୍କୃତିକ ଓ ସାମାଜିକ ସେବାମୂଳକ କାର୍ଯ୍ୟକଳାପ କ୍ଷେତ୍ରରେ ଅଧିକରୁ ଅଧିକ ମନୋନିବେଶ କରିବାକୁ ପଡିବ। ଆମ ଦେଶରେ ଏପରି ଟ୍ରେଡ୍ ୟୁନିୟନମାନଙ୍କ ସଂଖ୍ୟା ଖୁବ କମ୍ ଯେଉଁମାନେ ଶ୍ରମିକମାନଙ୍କ ପରିବାର ସହିତ ଜୀବନ୍ତ ସମ୍ପର୍କ ରକ୍ଷା କରନ୍ତି। ଏହା କେବଳ ସାଂସ୍କୃତିକ ଓ ସାମାଜିକ ସେବାମୂଳକ କାର୍ଯ୍ୟକଳାପ କ୍ଷେତ୍ରରେ ସକ୍ରିୟ ହେବାଦ୍ୱାରା ସମ୍ଭବପର ହୋଇଥାଏ। ଏପରି କାର୍ଯ୍ୟକଳାପ ପ୍ରତି ସାଧାରଣ ଶ୍ରମିକ ଓ ସେମାନଙ୍କ ପରିବାରମାନଙ୍କ ଆଗ୍ରହ ବୃଦ୍ଧି ପାଇ, ପରିଶେଷରେ ଏହା ଟ୍ରେଡ୍ ୟୁନିୟନ ଏକତାକୁ ହିଁ ଶକ୍ତିଶାଳୀ କରିଥାଏ ଏବଂ ଶ୍ରମିକମାନଙ୍କୁ ଉନ୍ନତ ସାମାଜିକ ଜୀବନ ଆଡେ ଆଗେଇ ନେଇଥାଏ। ଶ୍ରମିକ ଓ ସେମାନଙ୍କ ପରିବାର ଭିତରେ ବହୁ କଳାକାର ଓ ସାହିତ୍ୟିକ ରଚିସମ୍ପନ୍ନ ବ୍ୟକ୍ତି ରହିଥାନ୍ତି। ସେମାନେ କବିତା, ନାଟକ ଓ ପତ୍ରପତ୍ରିକାରେ ବିଭିନ୍ନ ଲେଖାମାନ ଲେଖିଥାନ୍ତି। ସେମାନେ ସଂଗୀତ, ନାଟକ ଓ ବିଭିନ୍ନ ଖେଳକୁଦରେ ସାମିଲ ହୋଇଥାନ୍ତି। ଅତଏବ, ଆମ ଟ୍ରେଡ୍ ୟୁନିୟନ

ଏପରି ସଂସ୍କୃତିସମ୍ପନ୍ନ କଳାକାର ଓ ସାମାଜିକ କର୍ମକର୍ତ୍ତାମାନଙ୍କ ନିକଟରେ ପହଞ୍ଚି ଜୀବନ୍ତ ସମ୍ପର୍କ ପ୍ରତିଷ୍ଠା କରିବାକୁ ପଡିବ। ଏଥିପ୍ରତି ବିମୁଖ ହେବା ଅର୍ଥ, ସମାଜର ବିଭିନ୍ନ ସ୍ତରପ୍ରତି ଟ୍ରେଡ୍ ୟୁନିୟନ ବିମୁଖ ହେଉଥିବା କୁହାଯିବ। ବିଭିନ୍ନ ୟୁନିୟନମାନେ ସେମାନଙ୍କ ପ୍ରୟାତ ନେତାମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ପାଠାଗାର ପ୍ରତିଷ୍ଠା କରିଥିବା ଆମେ ଦେଖୁଛେ ଏବଂ ଏହା ମାଧ୍ୟମରେ ଶ୍ରମିକମାନଙ୍କ ମଧ୍ୟରେ ପଢିବାର ଅଭ୍ୟାସ ବୃଦ୍ଧି ପାଇଥାଏ। ଏତଦବ୍ୟତୀତ, ଜାତି ଓ ଭାଷା ଭିତ୍ତିରେ ଟ୍ରେଡ୍ ୟୁନିୟନ ସଂଗଠନ ଗଢି ଉଠିଥିବା ଆମେ ପ୍ରତ୍ୟକ୍ଷ କରିଛେ। ଏହା ଶ୍ରମିକ ଆନ୍ଦୋଳନକୁ ବିଭେଦଗ୍ରସ୍ତ କରିଥାଏ। ଏପରି ଦୃଷ୍ଟିଭଙ୍ଗୀ ପରିତ୍ୟାଗ କରିବାକୁ ପଡିବ।

ଅନେକ ଶ୍ରମିକ ଦାରିଦ୍ର୍ୟ ଅବସ୍ଥା ଯୋଗୁଁ ସାଂସ୍କୃତିକଭାବେ ବିକାଶ କରିବା ସୁଯୋଗରୁ ବଞ୍ଚିତ ହୋଇଥାନ୍ତି। ଏହିଠାରେ ହିଁ ଟ୍ରେଡ୍ ୟୁନିୟନକୁ ଏପରି ସୁଯୋଗ ପ୍ରଦାନ କରିବା ଆବଶ୍ୟକ। ଯେଉଁ କେତେକ କ୍ଷେତ୍ରରେ ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ଶ୍ରମିକମାନଙ୍କୁ ସ୍ୱାକ୍ଷର କରିବାପାଇଁ ପଦକ୍ଷେପ ନେଇଛନ୍ତି, ସେଠାରେ ଏପରି ପଦକ୍ଷେପ ଶ୍ରମିକମାନଙ୍କ ଚେତନା ବୃଦ୍ଧି ପାଇଁ ସହାୟକ ହୋଇପାରିଛି। ସାମାଜିକ ପଶ୍ଚାଦପଦତା କାରଣରୁ ବହୁପ୍ରକାର ପଛୁଆ ଚେତନା ଓ ବେକାର ଗୁଡିକ ଶ୍ରମିକମାନଙ୍କ ମୁଣ୍ଡରେ ବସା ବାନ୍ଧିଥାଏ। ଏସବୁ ଦୂର କରିବା ପାଇଁ ପଦକ୍ଷେପ ଗ୍ରହଣ କଲେ ଟ୍ରେଡ୍ ୟୁନିୟନ ସଂଗଠନର ସଭ୍ୟପଦ ମାନ ବୃଦ୍ଧି ପାଇଥାଏ। ସେଥିପାଇଁ ଶ୍ରମିକମାନଙ୍କ ମଧ୍ୟରେ ଉନ୍ନତ ସାମାଜିକ ଓ ବିଜ୍ଞାନସମ୍ମତ ଦୃଷ୍ଟିଭଙ୍ଗୀ ପ୍ରସାର ପାଇବା ଆବଶ୍ୟକ।

## ଟ୍ରେଡ୍ ୟୁନିୟନ ଓ ସହଯୋଗ ଆନ୍ଦୋଳନ

ଶ୍ରମିକମାନଙ୍କ ଅବସ୍ଥାରେ ଉନତି ଆଣିବା ପାଇଁ ଟ୍ରେଡ୍ ୟୁନିୟନମାନେ ସହଯୋଗ ଯଥା କୋ-ଅପରେଟିଭ୍ ଗଠନ କରିଥାନ୍ତି। ଶ୍ରମିକମାନଙ୍କୁ ସୁଧଖୋରମାନଙ୍କ ଦାଉରୁ ରକ୍ଷା କରିବା ପାଇଁ ଟ୍ରେଡ୍ ୟୁନିୟନମାନେ କୋ-ଅପରେଟିଭ୍ ସୋସାଇଟି ଜରିଆରେ ଉଧାର ପ୍ରଦାନ ବ୍ୟବସ୍ଥା କରିଥାନ୍ତି। ବହୁମୁଖୀ କୋ-ଅପରେଟିଭ୍ ସୋସାଇଟି ଜରିଆରେ ଟ୍ରେଡ୍ ୟୁନିୟନମାନେ ନିତ୍ୟ

ବ୍ୟବହାର୍ଯ୍ୟ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇବା ସହ, ସୁଲଭ ଯାତାୟତ ବ୍ୟବସ୍ଥା, କ୍ୟାଣ୍ଟିନ୍, ହଲି ଡେ ହୋମ୍ ପ୍ରଭୃତି ପରିଚାଳନା କରନ୍ତି। କେତେକ ୟୁନିୟନ ସମବାୟ ବ୍ୟାଙ୍କ ପ୍ରତିଷ୍ଠା ପୂର୍ବକ ଏହା ଜରିଆରେ ଶ୍ରମିକମାନଙ୍କୁ ସାହାଯ୍ୟ କରିଥାନ୍ତି। ଏହାସତ୍ତ୍ୱେ, ଏପରି ସମବାୟ ସଂସ୍ଥା ମଧ୍ୟରୁ କେତେକଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ରହିଛି ଏବଂ ଏପରି କ୍ଷେତ୍ରରେ ଆଇନସଂଗତ ପଦକ୍ଷେପ ଗୃହୀତ ହେବା ଆବଶ୍ୟକ। ସମବାୟ ସଂସ୍ଥା ଗୁଡିକର କାର୍ଯ୍ୟକଳାପ ଉପରେ ପର୍ଯ୍ୟାପ୍ତ ସାମାଜିକ ନିୟନ୍ତ୍ରଣ ରହିବା ସହ, ଏହାର କାର୍ଯ୍ୟକଳାପ ଉପରେ ଶ୍ରମିକମାନଙ୍କ ତୀକ୍ଷ୍ଣ ନଜର ରହିବା ଉଚିତ। ଏପରି ସମବାୟ ସଂସ୍ଥା ଗୁଡିକ ଗଣତାନ୍ତ୍ରିକ ଭିତ୍ତିରେ ପରିଚାଳିତ ହେଲେ ହିଁ ସଫଳତା ମିଳିଥାଏ।

କେତେକ କ୍ଷେତ୍ରରେ, ମ୍ୟାନେଜମେଣ୍ଟ ପକ୍ଷରୁ ମଧ୍ୟ ସମବାୟ ଗଠନ ପାଇଁ ପଦକ୍ଷେପ ଗୃହୀତ ହୋଇଥାଏ। ସେଗୁଡିକ କିନ୍ତୁ ସଠିକ ଅର୍ଥରେ ଶ୍ରମିକମାନଙ୍କ ସମବାୟ ସମିତି ନୁହେଁ ବରଂ ଏହା ମାଲିକମାନଙ୍କର ସଂଗଠନ ଏବଂ ଏହାକୁ ସେମାନେ କଣ୍ଟ୍ରାକ୍ଟ୍ ଲେବର (ରେଗୁଲେସନ୍ ଆଣ୍ଡ୍ ଆବୋଲିଏସନ୍) ଆକ୍ଟ ର ବିଧିବିଧାନ ଗୁଡିକୁ ଫାଙ୍କିବା ପାଇଁ ଗଠନ କରିଥାନ୍ତି। ଯାବତୀୟ ଭ୍ରଷ୍ଟ ସମବାୟ ସମିତି ଗଠନ ପ୍ରକ୍ରିୟାକୁ ଟ୍ରେଡ୍ ୟୁନିୟନମାନେ ବିରୋଧ କରିବା ଆବଶ୍ୟକ। କାରଣ ସେଗୁଡିକ ଶ୍ରମିକମାନଙ୍କ ଉପରେ ଶୋଷଣ ଚଳେଇବା ପାଇଁ ଗଠିତ ହୋଇଥାଏ।

ଏପରିବି ଉଦାହରଣ ରହିଛି ଯେଉଁଠାରେ ଶ୍ରମିକ ଜଣେ ୟୁନିୟନର ନେତା ଥିଲାବେଳେ ଏହାର ସମବାୟ ସମିତି ଉପରେ ମଧ୍ୟ ନିୟନ୍ତ୍ରଣ ରଖିଥାଏ ଏବଂ କୋଟି କୋଟି ଟଙ୍କା ଦୁର୍ନୀତିରେ ଲିପ୍ତ। ବେଶ୍ କେତେକ ବଡ ବଡ କେନ୍ଦ୍ରୀୟ ରାଷ୍ଟ୍ରାୟତ୍ତ ଶିଳ୍ପ ସଂସ୍ଥା ଗୁଡିକରେ ବର୍ଷକୁ କୋଟି କୋଟି ଟଙ୍କାର କାରବାର (turnover) କରୁଥିବା କୋ–ଅପରେଟିଭ୍ ଗୁଡିକୁ ଶ୍ରମିକ ୟୁନିୟନମାନେ ହିଁ ପରିଚାଳିତ କରିଥାନ୍ତି। କେବଳ କେତେକ ବ୍ୟତିକ୍ରମକୁ ବାଦ

ଦେଲେ, ଶ୍ରମିକମାନଙ୍କର ଏହି କୋ–ଅପରେଟିଭ୍ ଗୁଡିକ ସେମାନଙ୍କ ଜୀବନଧାରଣ କ୍ଷେତ୍ରରେ ସହାୟକ ହୋଇଥାଏ କିନ୍ତୁ ଏହା ସଠିକ ମାର୍ଗରେ ପରିଚାଳିତ ହେବା ଆବଶ୍ୟକ।

## ଟ୍ରେଡ୍ ୟୁନିୟନ ଆନ୍ଦୋଳନର ସାମାଜିକ ଦାୟିତ୍ୱ

ଟ୍ରେଡ୍ ୟୁନିୟନ ସହ ସମାଜର ସବୁଠାରୁ ଆଗୁଆ ମଣିଷମାନେ ସାମିଲ ହୋଇଥାନ୍ତି ଏଣୁ ସମାଜର ପ୍ରତ୍ୟେକ ମଣିଷଙ୍କ ସ୍ୱାର୍ଥ ରକ୍ଷା ପାଇଁ ଏହାକୁ ସକ୍ରିୟ ହେବାକୁ ପଡିବ। ସମାଜସେବା କାର୍ଯ୍ୟକଳାପ କ୍ଷେତ୍ରରେ କେତେକ ୟୁନିୟନ ବେଶ୍ ଆଗୁଆ ଏବଂ ସେମାନେ ଶିଳ୍ପ ଚାରିପଟେ ବସବାସ କରୁଥିବା ସାଧାରଣ ମଣିଷମାନଙ୍କୁ ବିଭିନ୍ନ ମାର୍ଗରେ ସହାୟତା କରିଥାନ୍ତି ଏବଂ ସେମାନଙ୍କ ଉତ୍ତମ ଜୀବନ ଧାରଣ ପାଇଁ ଆନ୍ଦୋଳନ ପରିଚାଳନା କରନ୍ତି। କେତେକ ୟୁନିୟନ ଅତ୍ୟନ୍ତ ସଫଳତାପୂର୍ବକ ଗ୍ରାମ ପଞ୍ଚାୟତ ଗଠନରେ ସହାୟକ ହୋଇଥାନ୍ତି ଓ ଏହା ମାଧ୍ୟମରେ ଗ୍ରାମାଞ୍ଚଳର ଗରିବ ମଣିଷଙ୍କୁ ସାହାଯ୍ୟ କରିଥାନ୍ତି। ଏପରି କ୍ଷେତ୍ରରେ ଏହି ୟୁନିୟନ ଗୁଡିକ ସେ ଅଞ୍ଚଳର ମଣିଷମାନଙ୍କ ମଧ୍ୟରେ ନିଜର ବିଶେଷ ପରିଚୟ ବହନ କରୁଥିବା ଦେଖାଯାଇଥାଏ। ବିଭିନ୍ନ ସମୟରେ, ବିଶେଷକରି କୌଣସି ଏକ ଜାତୀୟ ଦୁର୍ବିପାକ ବେଳେ, ଏହି ଟ୍ରେଡ୍ ୟୁନିୟନମାନେ ଅତି ଉଦାରତାପୂର୍ବକ ସହାୟତା ସଂଗ୍ରହ କରିଥାନ୍ତି। ଏହା ସେମାନଙ୍କ ଉନ୍ନତ ଚେତନାର ପରିଚୟ ହୋଇଥାଏ। ଏପରି କାର୍ଯ୍ୟ ଦ୍ୱାରା ସେମାନେ ସାଧାରଣ ଗରିବ ମଣିଷମାନଙ୍କ ପାଖରେ ନିଜକୁ ଠିଆ କରିଥାନ୍ତି ଏବଂ ଏହା ହିଁ ହୋଇଥାଏ ସେମାନଙ୍କ ସାମାଜିକ ଦାୟିତ୍ୱ। ଆମର ଟ୍ରେଡ୍ ୟୁନିୟନ କ୍ୟାଡରମାନେ ସମାଜର ବିଭିନ୍ନ ସ୍ତରରେ ବାସ କରୁଥିବା ଗରିବ ମଣିଷମାନଙ୍କ ପାଖରେ, ବିଶେଷକରି ଅତି ଅସହାୟ ନିରନ୍ନ ମଣିଷଙ୍କ ପାଖରେ ପହଞ୍ଚିବା ଆବଶ୍ୟକ। କେତେକ ଟ୍ରେଡ୍ ୟୁନିୟନ ସେମାନଙ୍କ ସଭ୍ୟମାନଙ୍କ ମଧ୍ୟରେ ସାମାଜିକ ଦାୟିତ୍ୱବୋଧ ସୃଷ୍ଟି ପାଇଁ କାମ କରୁନଥିବା ଦେଖାଯାଇଥାଏ। ଏହିପରିଭାବେ, ଶ୍ରମିକଶ୍ରେଣୀର ଟ୍ରେଡ୍ ୟୁନିୟନ ସଂଗଠନ କସ୍ମିନ୍‌କାଳେ ସ୍ୱାର୍ଥନିଷ୍ଠ ଆଚରଣ ମଧ୍ୟରେ ଯଥା

କେବଳ ବ୍ୟକ୍ତିଗତ ସ୍ୱାର୍ଥ ମଧ୍ୟରେ ନିଜକୁ ସୀମାବଦ୍ଧ କରିବା ଅନୁଚିତ। ଏହାଫଳରେ, ସେ ନିଜ ଚାରିପଟେ ରହିଥିବା ଭାଇ ଭଉଣୀଙ୍କ ଠାରୁ ବିଚ୍ଛିନ୍ନ ହୋଇଥାଏ। ଏହା ସର୍ବୋପରି ତା ନିଜ ଆନ୍ଦୋଳନ ପ୍ରତି ମଧ୍ୟ ଅଶୁଭ ଅଟେ। ଅତଏବ, ଆମ ଦେଶର ଟ୍ରେଡ୍ ୟୁନିୟନ ଆନ୍ଦୋଳନ ନିଜର ସାମାଜିକ ଚେତନାକୁ ବେଶ୍ ସମ୍ପ୍ରସାରିତ କରିପାରିଲେ ହିଁ ଆଗାମୀ ଦିନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିପାରିବ।

## ଆଇ.ଏଲ୍.ଓ. ସୁପାରିଶ୍ (Conventions) ଗୁଡିକୁ ଅବିଳମ୍ବେ କାର୍ଯ୍ୟକାରୀ କର

ଭାରତ ସରକାର ଆଇ.ଏଲ୍.ଓ. କନଭେନସନ ଗୁଡିକୁ କାର୍ଯ୍ୟକରୀ କରିବା କ୍ଷେତ୍ରରେ ଅତିପରିମାଣରେ ମନ୍ଥର ଆଚରଣ ଯୋଗେ ପୀଡିତ। ଆଇ.ଏଲ୍.ଓ. ଗଠନ ପରେ ପରେ ଏବଂ ଭାରତବର୍ଷର ବିଲାତ ଶାସନ ଚଳୁଥିବା ବେଳର ୨୮ ବର୍ଷ ମଧ୍ୟରେ ଯେତିକି ସଂଖ୍ୟକ ଆଇ.ଏଲ୍.ଓ. ସୁପାରିଶ ଅନୁମୋଦିତ ହୋଇଥିଲା, ସ୍ୱାଧୀନତାର ୬୨ ବର୍ଷ ମଧ୍ୟରେବି ସମାନ ସେଇ ସଂଖ୍ୟକ ସୁପାରିଶ ଅନୁମୋଦିତ ହୋଇଛି। ବହୁ ଗୁରୁତ୍ୱପୂର୍ଣ୍ଣ ସୁପାରିଶ ପ୍ରତି ଭାରତ ସରକାର ଆଖିବୁଜି ବାଟ ଚାଲୁଛନ୍ତି। ସଂଗଠନ ଗଢିବା ଓ ଯୌଥ ଦରକଷାକଷି ସୁପାରିଶଟି ଆଜିପର୍ଯ୍ୟନ୍ତ ଭାରତ ସରକାର ଅନୁମୋଦନ କରିନାହାନ୍ତି। ଆଇ.ଏଲ୍.ଓ. ର ୩୭ ଟି ସୁପାରିଶ ଭାରତ ସରକାର ଅନୁମୋଦନ କରିଥିଲେ ମଧ୍ୟ ସେଗୁଡିକୁ ଆନ୍ତରିକତା ସହ କାର୍ଯ୍ୟକାରୀ କରାଯାଇ ନଥାଏ।

ଆଇ.ଏଲ୍.ଓ. ର ମୁଖ୍ୟତଃ ୮ ଟି ମୌଳିକ (Core) ସୁପାରିଶ ରହିଛି। ଭାରତ ସରକାର ସେଗୁଡିକୁ ଅବିଳମ୍ବେ ଅନୁମୋଦନ କରିବା ଆବଶ୍ୟକ। ଆଇ.ଏଲ୍.ଓ. ର ୯୦ତମ ବାର୍ଷିକ ଅଧିବେଶନ ସୁଦ୍ଧା ଭାରତ ସରକାର ଅନ୍ତତଃପକ୍ଷେ ଏହି ୮ ଟି ମୌଳିକ ସୁପାରିଶ ଗୁଡିକୁ ଗ୍ରହଣ କରିବା ଦରକାର। କିନ୍ତୁ, ସେ ମାର୍ଗରେ ଏବେ ପର୍ଯ୍ୟନ୍ତ କୌଣସି ପଦକ୍ଷେପ ଗୃହୀତ ହୋଇନାହିଁ।

ଆଇ.ଏଲ୍.ଓ. ର ଡାଇରେକ୍ଟର ଜେନେରାଲ ଶ୍ରୀଯୁକ୍ତ ଜେ. ସୋମାରିଆଙ୍କ ଅନୁସାରେ ଏହି ୮ ଟି ଯାକ ମୌଳିକ ସୁପାରିଶ ଶ୍ରମଜୀବୀ ମଣିଷମାନଙ୍କ ଉତ୍ତମ ଜୀବନମାନ ରକ୍ଷାର ପ୍ରାକ୍ ସର୍ତ୍ତ ଅଟେ। ହେଲେ କିନ୍ତୁ, ଭାରତ ସରକାରଙ୍କ ନିଦ ଭାଙ୍ଗିନାହିଁ। ଉକ୍ତ ମୌଳିକ ସୁପାରିଶ ଗୁଡିକ ହେଉଛି :

| S/No. | Nomenclature | Convention No. | Year of Adoption |
|---|---|---|---|
| 1 | Freedom of Association and Protection of the Right to Organise | 87 | 1948 |
| 2 | Right to Organise and Collective bargaining | 98 | 1949 |
| 3 | Forced Labour | 29 | 1930 |
| 4 | Abolition of Forced Labour | 105 | 1957 |
| 5 | Minimum age | 138 | 1973 |
| 6 | Worst Form of Child Labour | 182 | 1999 |
| 7 | Equal Remuneration | 100 | 1951 |
| 8 | Discrimination (Employment and Occupation) | 111 | 1958 |

ଆଇ.ଏଲ୍.ଓ. ର ଏହି ସୁପାରିଶ ଗୁଡିକ ମାମୁଲି ସୁପାରିଶ ନୁହେଁ ବରଂ ଆଇ.ଏଲ୍.ଓ. ଅନ୍ତର୍ଭୁକ୍ତ ସ୍ୱାଧୀନ ସାର୍ବଭୌମ ସଭ୍ୟ ରାଷ୍ଟ୍ରମାନଙ୍କ ଦ୍ୱାରା ଗୃହୀତ ସର୍ବସମ୍ମତ ଚୁକ୍ତି ଅଟେ। ମୁଖ୍ୟତଃ ଏଥିମଧ୍ୟରୁ ଭାରତ ସରକାର ବର୍ତ୍ତମାନ ପର୍ଯ୍ୟନ୍ତ ୪ ଟି ସୁପାରିଶ ଯଥା ବନ୍ଧୁଆ (ଦାଦନ) ଶ୍ରମିକ, ସମାନ କାମ ପାଇଁ ସମାନ ମଜୁରି, ବାଧ୍ୟତାମୂଳ ଶ୍ରମ ଏବଂ ନିଯୁକ୍ତି ଓ ପେଶା କ୍ଷେତ୍ରରେ ପାତର ଅନ୍ତର

ସୁପାରିଶ ଗୁଡିକୁ ଅନୁମୋଦନ କରିଛନ୍ତି। ଅନ୍ୟ ୪ ଟି ବର୍ତ୍ତମାନ ପର୍ଯ୍ୟନ୍ତ ଅନୁମୋଦିତ ହୋଇନାହିଁ। ଭାରତ ସରକାର ଆଇ.ଏଲ୍.ଓ. ର ପ୍ରତିଷ୍ଠାତା ରାଷ୍ଟ୍ରମାନଙ୍କ ମଧ୍ୟରୁ ଅନ୍ୟତମ କିନ୍ତୁ ଚୁକ୍ତି ଅନୁମୋଦନ କ୍ଷେତ୍ରରେ ପଛେଇ ରହିଛି। ଅତଏବ, ଆମ ଦେଶର ଆନ୍ଦୋଳନକୁ ଏଥିପାଇଁ ବ୍ୟାପକ ପ୍ରଚାର ଅଭିଯାନ କରିବାକୁ ହେବ ଯେପରି ଆଇ.ଏଲ୍.ଓ. ର କନଭେନସନ୍ ଗୁଡିକ ଯଥାଶୀଘ୍ର ଅନୁମୋଦିତ ହେବ। ଏହାଫଳରେ ବିକାଶଶୀଳ ଦେଶମାନେ ଭାରତ ସରକାରଙ୍କ ପଦକ୍ଷେପ ଦ୍ୱାରା ଉତ୍ସାହିତ ହେବେ।

ଉନ୍ନତ ଦେଶମାନେ ଭାରତବର୍ଷ କ୍ଷେତ୍ରରେ ସେମାନଙ୍କ ବାଣିଜ୍ୟିକ ସମ୍ପର୍କ ପୃଷ୍ଠଭୂମିରେ ଉପରୋକ୍ତ ସୁପାରିଶ ଗୁଡିକର ଅବିଳମ୍ବେ ଅନୁମୋଦନ କରିବା ପାଇଁ ଓକିଲାତି କରିଥାନ୍ତି। ସେମାନଙ୍କର ଏପରି ଦାବିକୁ ଆମ ଦେଶର ଟ୍ରେଡ୍ ୟୁନିୟନମାନେ ବାଣିଜ୍ୟିକ ସମ୍ପର୍କ ପୃଷ୍ଠଭୂମିରେ ବିରୋଧ କରିଥାନ୍ତି କିନ୍ତୁ ମୌଳିକ ସୁପାରିଶ ଗୁଡିକ ଯେ ଉନ୍ନତ ଶ୍ରମ ବ୍ୟବସ୍ଥା ଓ ଶ୍ରମ ସମ୍ପର୍କ ପାଇଁ ଅପରିହାର୍ଯ୍ୟ, ତେଣୁ ମୌଳିକ ସୁପାରିଶ ଗୁଡିକ ସରକାରଙ୍କ ପକ୍ଷରୁ ଅବିଳମ୍ବେ ଅନୁମୋଦିତ ହେବା ଆବଶ୍ୟକ।

## ମାଫିଆମାନଙ୍କ ଭୂମିକା

ବିଶ୍ୱସାରା ବିଭିନ୍ନ ଦେଶରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ମାଫିଆମାନଙ୍କ ବାଜେ, ଅନୈତିକ କାର୍ଯ୍ୟକଳାପ ଯୋଗେ ପ୍ରଭାବିତ ହୋଇଥିବା ଦେଖାଯାଇଥାଏ। ଉଦାହରଣ ସ୍ୱରୂପ, କୋଇଲା ଖଣି ଇଲାକାର ମାଫିଆମାନେ ସେହି ଇଲାକାର ସାମାଜିକ ଜୀବନକୁ ନିଜ ନିଜ ଢଙ୍ଗରେ ଆତଙ୍କିତ କରିଥାନ୍ତି। ଅନେକାଂଶରେ ଏହା ସେହି ଶିଳ୍ପର ସ୍ୱାର୍ଥ ବିରୁଦ୍ଧରେ କାମ କରିଥାଏ। ୭୦ ଦଶକ ବେଳକୁ କେନ୍ଦ୍ର ଶ୍ରମ ମନ୍ତ୍ରଣାଳୟ ଏହି ମାଫିଆମାନଙ୍କ ସମ୍ପର୍କରେ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ। ଏହାନୁସାରେ, ଏହି ମାଫିଆମାନେ ନିର୍ଦ୍ଦିଷ୍ଟ ଟ୍ରେଡ୍

ୟୁନିୟନ ଚଳେଇବା ସହ ସୁଧିଆ କାରବାର ମଧ୍ୟ କରିଥାନ୍ତି। ଶ୍ରମିକମାନଙ୍କ ଠାରୁ ଚଢା ହାରରେ ବଳପୂର୍ବକ ସୁଧ ଆଦାୟ କରିଥାନ୍ତି। କେତେକ ଟ୍ରେଡ୍ ୟୁନିୟନ ନେତା ଏହି କ୍ଷେତ୍ରରେ ବେନାମି ଠିକା କାମର ମାଲିକ ଏବଂ ବିଶାଳ ପରିମାଣର ଧନ ଠୁଳ କରୁଥିବା ଦେଖାଯାଇଥାଏ। ସେମାନଙ୍କ କାର୍ଯ୍ୟକଳାପ ଶିଳ୍ପକୁ କ୍ଷତିଗ୍ରସ୍ତ କରିବା ସହ ଶ୍ରମିକମାନଙ୍କ ଜୀବନ ଜାପନ ଅବସ୍ଥାକୁ ମଧ୍ୟ ତଳିତଳାନ୍ତ କରିଥାଏ। କୋଇଲା ଖଣି ଗୁଡିକରେ ମାଫିଆମାନଙ୍କ ଉତ୍ପାତ ସୁଦୂର ପ୍ରସାରି ଏବଂ ସେମାନେ ରାଜନୈତିକ ଦଳଗୁଡିକର ଛତ୍ରଛାୟାରେ କାର୍ଯ୍ୟ କରୁଥିବା ଦେଖାଯାଇଥାଏ। ଏହି ମାଫିଆମାନଙ୍କ ମଧ୍ୟରୁ କେତେକଙ୍କର ନିଜସ୍ୱ ସଶସ୍ତ୍ର ସେନାବାହିନୀ ରହିଛି। ସେମାନେ ଶ୍ରମିକମାନଙ୍କୁ ସେମାନଙ୍କ ଗଣତାନ୍ତ୍ରିକ ଆନ୍ଦୋଳନର ଅଧିକାରରୁ ବଞ୍ଚିତ କରିଥାନ୍ତି। ବହୁ ଟ୍ରେଡ୍ ୟୁନିୟନ ନେତାମାନେ ମଧ୍ୟ ମାଫିଆମାନଙ୍କ ଦ୍ୱାରା ଖୁନ୍ ହୋଇଛନ୍ତି। ମାଫିଆମାନେ କୌଣସି ପ୍ରକାର ଆଇନକୁ ସମ୍ମାନ କରନ୍ତିନାହିଁ। ଏପରି ଘୃଣ୍ୟ ଅବସ୍ଥା ଅବ୍ୟାହତ କାରଣ ଏହାପଛରେ ରହିଛି ରାଜନୈତିକ ଦଳମାନଙ୍କ ପୃଷ୍ଠପୋଷକତା। ଏହି ଦଳ ଗୁଡିକ ମାଫିଆମାନଙ୍କ ଠାରୁ ମୋଟା ଅଙ୍କରେ ଚାନ୍ଦା ନେଇଥାନ୍ତି। ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଭିତରେ ଥାଇ ଏପରି ମାଫିଆତନ୍ତ୍ର ଅବିଳମ୍ବେ ବନ୍ଦ ହେବା ଆବଶ୍ୟକ।

## ପେଶାଗତ ଅସୁସ୍ଥତା ଓ ସୁରକ୍ଷା

ଧୀରେ ଧୀରେ ବହୁ ଆଧୁନିକ ଟେକ୍ନୋଲଜୀ ଆମ ଶିଳ୍ପ କ୍ଷେତ୍ରକୁ ପ୍ରବେଶ କରିଛି। ଆଗତ ନୂଆ ଯାନ୍ତ୍ରିକ କୌଶଳ ସହ ଶ୍ରମିକମାନଙ୍କ ସ୍ୱାସ୍ଥ୍ୟ ପ୍ରତି ମଧ୍ୟ ବିପଦ ବୃଦ୍ଧି ପାଇଛି। ହଜାର ହଜାର ପ୍ରକାରର ସାଂଘାତିକ କେମିକାଲ ବର୍ତ୍ତମାନ ଶିଳ୍ପରେ ଉପଯୋଗକୁ ଆସୁଛି, ଯେଉଁଗୁଡିକ ଶ୍ରମିକମାନଙ୍କ ସ୍ୱାସ୍ଥ୍ୟ ପ୍ରତି ଅତି

ପରିମାଣରେ ବିପଦଜନକ। ଆଜବେଷ୍ଟସ୍‌କୁ ନେଇ ବିଶ୍ୱସାରା ଅଭିଯାନ ଚାଲିଛି ଏହା ଯେପରି ବନ୍ଦ ହେବ କିନ୍ତୁ ଭାରତ ବର୍ଷରେ ଏହାକୁ ଆଖିବୁଜି ଉତ୍ପାଦନ କରାଯାଉଛି ଏବଂ ଦିନକୁ ଦିନ ଏହାର ବ୍ୟବହାର ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି। ପାଣି ଜାହାଜ ଭାଙ୍ଗିବା କାମ କ୍ଷେତ୍ରରେ ମଧ୍ୟ ଶ୍ରମିକମାନେ ବହୁପ୍ରକାର ମାରାତ୍ମକ କେମିକାଲ ସଂସ୍ପର୍ଶରେ ଆସିଥାନ୍ତି, ଶ୍ରମିକମାନଙ୍କ ସ୍ୱାସ୍ଥ୍ୟ ପ୍ରତି ଏହା ଅତ୍ୟନ୍ତ ବିପଦଜନକ। କୋଇଲା ଶିଳ୍ପରେ ମଧ୍ୟ Pneumoconiosis ବ୍ୟାଧି ଶ୍ରମିକମାନଙ୍କ ସ୍ୱାସ୍ଥ୍ୟପ୍ରତି ବିପଦ ସୃଷ୍ଟି କରୁଛି, ପ୍ରତ୍ୟେକ ବର୍ଷ ହଜାର ହଜାର ସଂଖ୍ୟକ ଶ୍ରମିକ ଏହାଯୋଗେ ପୀଡିତ ହେଉଛନ୍ତି। ଶ୍ରମିକମାନେ ମଧ୍ୟ କାମବେଳେ carcigenic ତତ୍ତ୍ୱ ପ୍ରଭାବରେ ସ୍ୱାସ୍ଥ୍ୟ ହରାଉଛନ୍ତି। ଭାରତ ସରକାର ଇତିମଧ୍ୟରେ ଫ୍ୟାକ୍ଟ୍ରି ଆଇନ ସଂଶୋଧନପୂର୍ବକ ପେଶାଗତ ଅସୁସ୍ଥତା ବିରୋଧରେ ପଦକ୍ଷେପ ଗ୍ରହଣ କରିଛନ୍ତି କିନ୍ତୁ ଆଇନ କାର୍ଯ୍ୟକାରୀ ହୁଏନାହିଁ ଏବଂ ଶ୍ରମିକମାନେ ଯେପରିକି ସେପରି ପୀଡିତ ହେଉଛନ୍ତି। ଏତଦବ୍ୟତୀତ ସାରାଦେଶରେ, ସଡକ ଦୁର୍ଘଟଣାରେ ପ୍ରତିବର୍ଷ ୪୦ ହଜାର ଶ୍ରମିକ ମୃତ୍ୟୁବରଣ କରୁଛନ୍ତି। ସେଠାରେ ଶ୍ରମିକମାନଙ୍କୁ ସୁରକ୍ଷା ପ୍ରଦାନ ପାଇଁ ଅଦ୍ୟାବଧି କୌଣସି ଆଇନ ନାହିଁ। ପେଶାଗତ ବ୍ୟାଧି ଯୋଗେ ପୀଡିତ ଶ୍ରମିକମାନେ ମଧ୍ୟ ସୁରକ୍ଷା ବଳୟ ବାହାର ରହିଛନ୍ତି।

ଯେଉଁସବୁ ବହୁରାଷ୍ଟ୍ରୀୟ କମ୍ପାନୀ ଆମ ଦେଶରେ କଳ କାରଖାନା ଚଳାଉଛନ୍ତି, ସେମାନେ ତାଙ୍କ ନିଜ ଦେଶରେ ପେଶାଗତ ବ୍ୟାଧି ବିରୁଦ୍ଧରେ ଅତୀବ ପରିମାଣରେ ସଚେତନ କିନ୍ତୁ ଭାରତବର୍ଷରେ ସେମାନଙ୍କ ଆଚରଣ ଠିକ ଏହାର ବିପରୀତ ଅଟେ। ଭୋପାଳର ୟୁନିୟନ କାର୍ବାଇଡ୍ ଏହାର ଜ୍ୱଳନ୍ତ ଉଦାହରଣ, ଯିଏକି ନିଜ ଦେଶ ଆମେରିକାରେ ଯେଉଁ ସମସ୍ତ ସୁରକ୍ଷା ନିୟମ ଗୁଡିକୁ ଅକ୍ଷରେ ଅକ୍ଷରେ ପାଳନ କରିଥାନ୍ତି, ଭାରତବର୍ଷ କ୍ଷେତ୍ରରେ କିନ୍ତୁ ଏହାକୁ

ଉଲଂଘନ କରିଥିଲେ। ପ୍ରତ୍ୟେକ ଶିଳ୍ପ କ୍ଷେତ୍ରରେ ପେଶାଗତ ଅସୁସ୍ଥତା ଗୁଡିକ ଚିହ୍ନଟ କରିବା ସହ ନିର୍ଦ୍ଦିଷ୍ଟଭାବେ ଉପସମ ଉପାୟ ଗୃହୀତ ହେବା ଆବଶ୍ୟକ। ଯେକୌଣସି ଶ୍ରମିକ ପେଶାଗତ ଅନୁସ୍ଥତା ପାଇଁ ପୀଡିତ ରହିଥିବା ଚିହ୍ନଟ ହେବାମାତ୍ରେ ସମ୍ପୂର୍ଣ୍ଣଭାବେ ପୁର୍ନବାସୀତ ହେବା ଉଚିତ। ଏଠାରେ କେତେକ ମ୍ୟାନେଜମେଣ୍ଟ ସ୍ୱେଚ୍ଛାକୃତ ଅବସର ଯୋଜନା କାର୍ଯ୍ୟକାରୀ କରୁଥିବା ଦେଖାଯାଇଥାଏ। ଏହା ଅବିଳମ୍ବେ ବନ୍ଦ ହେବା ଆବଶ୍ୟକ। ଏହି କ୍ଷେତ୍ରରେ ପ୍ରତ୍ୟେକ ଶିଳ୍ପରେ ବିଧିମତେ ଇନିସ୍ପେକ୍ସନ୍ ହେବା ଆବଶ୍ୟକ ଏବଂ କର୍ତ୍ତବ୍ୟରେ ଖିଲାପ୍ କରୁଥିବା ଇନିସ୍ପେକ୍ଟରଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ହେବା ଆବଶ୍ୟକ କାରଣ କେତେକ ଇନିସ୍ପେକ୍ଟର ମାଲିକମାନଙ୍କ ଠାରୁ ଉତ୍କୋଚ ନେଇ ଭୁଲ ରିପୋର୍ଟ ଦେଇଥାନ୍ତି।

ଆଗାମୀ ଦିନରେ, ସୁରକ୍ଷା ସମ୍ପର୍କୀୟ ପ୍ରଶ୍ନ ଉପରେ ସକଳ ସ୍ତରର ଟ୍ରେଡ୍ ୟୁନିୟନମାନଙ୍କୁ ସାମିଲ କରାଯିବା ଉଚିତ। ଟ୍ରେଡ୍ ୟୁନିୟନ ଗୁଡିକ ନିଜ ନିଜ ସଂଗଠନ ଭିତରେ ସେଫ୍ଟି ଇନିସ୍ପେକ୍ଟର ତିଆର କରିବା ଆବଶ୍ୟକ କାରଣ ଏହି କ୍ଷେତ୍ରରେ ସେମାନେ ନିର୍ଦ୍ଦିଷ୍ଟଭାବେ ସ୍ୱାସ୍ଥ୍ୟଗତ ଦୁରାବସ୍ଥା ଓ ପେଶାଗତ ବ୍ୟାଧି ଏବଂ ସୁରକ୍ଷା ସମ୍ବନ୍ଧିତ ବିଷୟ ଗୁଡିକୁ ଚିହ୍ନଟ କରିପାରିବେ।

ପ୍ରତ୍ୟେକ ଶିଳ୍ପ କ୍ଷେତ୍ରରେ ରହିଥିବା ସୁରକ୍ଷା ନିୟମର ଉଲଂଘନ ବିରୁଦ୍ଧରେ କଠୋର ଦଣ୍ଡବିଧାନ ହେବା ଆବଶ୍ୟକ। କ୍ଷତିଗ୍ରସ୍ତ ଶ୍ରମିକ ଜଣେ ଯେପରି ସାରା ଜୀବନ ସୁରକ୍ଷିତ ରହିପାରିବ, ସେଥିପାଇଁ କ୍ଷତିପରିମାଣ ମଧ୍ୟ ବୃଦ୍ଧି ପାଇବା ଆବଶ୍ୟକ।

ଆମ ଦେଶର ଟ୍ରେଡ୍ ୟୁନିୟନର ଆନ୍ଦୋଳନକୁ ବିଭିନ୍ନ ଦେଶର ସୁରକ୍ଷିତ କାର୍ଯ୍ୟ ପରିବେଶ ସମ୍ପର୍କରେ ସଠିକ ଜ୍ଞାନ ଅର୍ଜନ କରିବା ଦରକାର। ଏଥିସହ

ନିଜେ କାମ କରୁଥିବା ଶିଳ୍ପର ସୁରକ୍ଷିତ ପରିବେଶ ପାଇଁ ସେମାନେ ତୁଣ୍ଡ ଖୋଲିପାରିବେ। ସୁରକ୍ଷା ପ୍ରଶ୍ନକୁ ନେଇ ଉତ୍ପାଦନ ପରିବ୍ୟୟ ବୃଦ୍ଧି ପାଉଥିବା ଯୁକ୍ତି ଠିଆ କରାଯାଇଥାଏ କିନ୍ତୁ ସୁରକ୍ଷା ବାବଦକୁ ଖର୍ଚ୍ଚ ଯାହାବି ହେଉନା କାହିଁକି, ଏହାର ଉପଯୁକ୍ତ ବ୍ୟବସ୍ଥା ସବୁକ୍ଷେତ୍ରରେ ରହିବା ଆବଶ୍ୟକ।

## ପରିବେଶର ଆହ୍ୱାନ ଓ ଜଳବାୟୁ ସମ୍ବନ୍ଧୀୟ ପରିବର୍ତ୍ତନ

ଶିଳ୍ପ ବିକାଶ ସାଥେ ସାଥେ ପରିବେଶ ବିପର୍ଯ୍ୟୟ ଆମ ଶିଳ୍ପ ସଂସ୍ଥା କ୍ଷେତ୍ରରେ ଗୁରୁତର ପରିସ୍ଥିତିକୁ ଜନ୍ମ ଦେଇଛି। ଘଞ୍ଚ ଜଙ୍ଗଲ ପରିବେଶ କ୍ରମେ ବିନାଶ ପାଉଛି ଏବଂ ଜଙ୍ଗଲ ମାଫିଆମାନେ ମଧ୍ୟ ଜଙ୍ଗଲ କାଟି ସଫା କରିଦେଉଛନ୍ତି। ଫଳସ୍ୱରୂପ, ନୈମିତ୍ତିକ ବର୍ଷା ଅନୁପାତରେ ହ୍ରାସ ଘଟୁଛି। କଳକାରଖାନା ପ୍ରତିଷ୍ଠା, ଖଣି ଖାଦାନ ପାଇଁ ମଧ୍ୟ ଜଙ୍ଗଲର ବିନାଶ ହେଉଛି। ଏହାଫଳରେ ସବୁଆଡେ ପରିବେଶଗତ ଭାରସାମ୍ୟ ବଦଳି ଚାଲିଛି। ସହର ଗୁଡିକ କାୟାବିସ୍ତାର କରୁଥିବାରୁ ଦେଶର ବହୁ ଇଲାକାରେ ଜଙ୍ଗଲ ବିନାଶ ପାଉଛି।

ହଜାର ହଜାର ଏକର ଭୂମିରେ ଥିବା ଘଞ୍ଚ ଜଙ୍ଗଲ ଦିନକୁ ଦିନ ଉଭାନ ପାଲଟୁଛନ୍ତି। ଘଞ୍ଚ ଜଙ୍ଗଲକୁ ସଫା କରି କାଗଜକଳମାନେ ସାରା ଦୁନିଆର ଖବର କାଗଜମାନଙ୍କ ଉଦର ପୂର୍ତ୍ତି କରୁଛନ୍ତି ଏବଂ ଅନ୍ୟପକ୍ଷରେ ନୂଆଭାବେ ଜଙ୍ଗଲ ସୃଷ୍ଟି କରାଯାଉ ନାହିଁ।

ବିଭିନ୍ନ ଥର୍ମାଲ ପାୱାର ପ୍ଲାଣ୍ଟ ଗୁଡିକରୁ ପ୍ରଭୂତ ପରିମାଣର କାର୍ବନ ଡାଇଅକ୍ସାଇଡ୍ ଅହରହ ନିର୍ଗତ ହେଉଛି। ଏହା ଲୋକମାନଙ୍କ ପାଇଁ ବିଜୁଳି ଯୋଗାଉଥିଲେ ମଧ୍ୟ ଅନ୍ୟପକ୍ଷରେ ବାୟୁମଣ୍ଡଳକୁ ପ୍ରଦୂଷିତ କରୁଛନ୍ତି। ସର୍ବତ୍ର ଲକ୍ଷ ଲକ୍ଷ କାର୍, ବସ୍ ଗୁଡିକ ମଧ୍ୟ ଅହରହ ପରିବେଶକୁ କାର୍ବନ ଡାଇଅକ୍ସାଇଡ୍ ଦ୍ୱାରା ପ୍ରଦୂଷିତ କରୁଛନ୍ତି। ସାରା ଦୁନିଆରେ ବାୟୁ ମଣ୍ଡଳର ଉତ୍ତାପ କ୍ରମଶଃ

ଉତ୍ତପ୍ତ ପାଲଟୁଛି। ପୃଥିବୀ ପୃଷ୍ଠର ସବୁଜ ଆବରଣ ପ୍ରତି ବିଶ୍ୱବ୍ୟାପୀ ବିପଦ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି। ବାୟୁମଣ୍ଡଳ ଉତ୍ତାପ କ୍ଷେତ୍ରରେ ପରିବର୍ତ୍ତନ ଜୈବିକ ବିବିଧତା ପ୍ରତି ବିପଦ ସୃଷ୍ଟି କରିଛି ଏବଂ ଏହାଫଳରେ ବହୁ ଜୀବସତ୍ତା ଭାରତ ସମେତ ବିଶ୍ୱସାରା ବିଲୋପ ପାଉଛନ୍ତି। ସର୍ବତ୍ର ଗୁରୁତର ପ୍ରଦୂଷଣ ଯୋଗୁଁ ମାନବୀୟ ସ୍ୱାସ୍ଥ୍ୟ ମଧ୍ୟ ପ୍ରଭାବିତ ହେଉଛି। ବୃଦ୍ଧି ପାଉଥିବା ଉଷ୍ମ ପରିବେଶ କ୍ରମଶଃ ଗୋଲାର୍ଦ୍ଧ ଉପରେ ମାନବ ଜୀବନ ପ୍ରତି ବିପଦ ସୃଷ୍ଟି କରିଛି।

ପୃଥିବୀର ଉତ୍ତର ଓ ଦକ୍ଷିଣମେରୁ ଅଞ୍ଚଳରେ ଉଷ୍ମ ବାତାବରଣ ବୃଦ୍ଧି ପାଉଥିବା ଯୋଗୁଁ ବରଫ ତରଳିବା ବୃଦ୍ଧି ପାଉଛି। ଏପରି ବୃଦ୍ଧି ପାଇବା ବନ୍ଦ ନହେଲେ ସମୁଦ୍ର ଜଳପତ୍ତନ ବୃଦ୍ଧି ପାଇବ ଏବଂ ସମୁଦ୍ର ଉପକୂଳବର୍ତ୍ତୀ ବହୁ ସହର ବିନାଶ ଓ ବିପର୍ଯ୍ୟୟକୁ ହାବୁଡିବେ।

ବାୟୁମଣ୍ଡଳରେ ଓଜନ୍ ଆବରଣ କ୍ରମଶଃ ହ୍ରାସ ପାଉଛି। ଏପରି ହ୍ରାସ ସୂର୍ଯ୍ୟ ଉତ୍ତାପଜନିତ ମାରାତ୍ମକ ପରିଣତିକୁ ଜନ୍ମ ଦେବ। ସମଗ୍ର ଜୀବଜଗତ ଏହାଯୋଗେ ପ୍ରଭାବିତ ହେବେ।

ନୈମିତ୍ତିକ ଋତୁ ପରିବର୍ତ୍ତନରେ ମଧ୍ୟ ବଦଳ ଆସିଛି। ସର୍ବତ୍ର ବର୍ଷା ଅନୁପାତ ହ୍ରାସ ପାଇ ମରୁଡି ଅବସ୍ଥା ସୃଷ୍ଟି କରୁଛି। କ୍ରମଶଃ ଭୂପୃଷ୍ଠର ଜଳପତନ ହ୍ରାସ ପାଉଛି। ବିଶ୍ୱ ଆଜି ଏହି ସମସ୍ତ କାରଣରୁ ନାହିଁ ନଥିବା ବିପଦର ମୁଖାମୁଖି ହୋଇଛି।

ବିଶ୍ୱର ଉନ୍ନତ ଦେଶ ଗୁଡିକ ସାଧାରଣଭାବେ ବାୟୁମଣ୍ଡଳକୁ ସର୍ବାଧିକ ପ୍ରଦୂଷ୍ୟିତ କରୁଛନ୍ତି। ସେମାନେ ହିଁ ବାୟୁମଣ୍ଡଳରେ ସର୍ବାଧିକ କାର୍ବନ ଡାଇଅକ୍ସାଇଡ୍ ନିର୍ଗତ ପାଇଁ ଦାୟୀ। ବିଶ୍ୱର ସମସ୍ତ ରାଷ୍ଟ୍ର ପକ୍ଷରୁ ଗୃହୀତ କାଇଟୋ ଘୋଷଣାକୁ ସେସବୁ ଦେଶ ଫାଙ୍କୁଛନ୍ତି। ଅନ୍ୟପକ୍ଷରେ, ବିକାଶଶୀଳ ଦେଶର ବିକାଶ ପ୍ରଶ୍ନ ବେଳକୁ ସେମାନେ କାର୍ବନ ଡାଇଅକ୍ସାଇଡ୍ ନିର୍ଗତ ଉପରେ ଯାବତୀୟ କଟକଣା ଆରୋପ କରୁଛନ୍ତି, ଯାହାକି ସେସବୁ ଦେଶକୁ ପଛେଇ ଦେବ।

ବିକାଶଶୀଳ ଦେଶମାନଙ୍କ ମଧ୍ୟରେ ଭାରତବର୍ଷ ହେଉଛି ଏକ ବଡ ଦେଶ ଏବଂ ପରିବେଶଜନିତ ନୀତିକୁ ଏହା ଇତିମଧ୍ୟରେ ଜଳବାୟୁ ସୁରକ୍ଷା ସ୍ୱାର୍ଥରେ ଉପଯୋଗ କରିବା କଥା। ଆମେ କିନ୍ତୁ କୌଣସିମତେ ଉନ୍ନତ ଦେଶମାନଙ୍କ ଚାପ ପାଖରେ ମୁଣ୍ଡ ନୁଆଇବା ଅନୁଚିତ।

ପରିବେଶ ସୁରକ୍ଷା ଓ ବାୟୁମଣ୍ଡଳରେ କାର୍ବନ ଡାଇଅକ୍ସାଇଡ ନିର୍ଗତକୁ ନିୟନ୍ତ୍ରଣରେ ରଖିବା ପାଇଁ ନିର୍ଦ୍ଦିଷ୍ଟଭାବେ ଆମ ଦେଶ ପକ୍ଷରୁ ନୀତି ନିର୍ଦ୍ଧାରିତ ହେବା ଉଚିତ କିନ୍ତୁ ଏଥିସହ ଆମେ କୌଣସିମତେ ବିକଶିତ ଦେଶମାନଙ୍କ ଚାପ ଆଗରେ ମୁଣ୍ଡ ନୁଆଇବା ସଠିକ ହେବନାହିଁ। ଏଥିସହ ଆମକୁ ପର୍ଯ୍ୟାବରଣ ସୁରକ୍ଷା ସ୍ୱାର୍ଥରେ ସଠିକ ଯାନ୍ତ୍ରିକ କୌଶଳ ଆମ ପରିବେଶ ଉପରେ ଲକ୍ଷ୍ୟ ରଖି, ଗ୍ରହଣ କରିବା ଉଚିତ ଯେପରି ଦେଶର ବିକାଶ ବାଧାପ୍ରାପ୍ତ ହେବନାହିଁ।

## ଶ୍ରମ ଆଇନର ସରଳୀକରଣ

ଆମ ଟ୍ରେଡ୍ ୟୁନିୟନମାନେ ବହୁ ସଂଖ୍ୟକ ଶ୍ରମ ଆଇନ ଯୋଗେ ବାସ୍ତବରେ ଉପକୃତ ହୁଅନ୍ତି ନାହିଁ। ଏହାସତ୍ତ୍ୱେ ଶ୍ରମ ସମ୍ପର୍କ ମେସିନାରୀ ମାଧ୍ୟମରେ ଆମ ଦେଶର ଟ୍ରେଡ୍ ୟୁନିୟନମାନେ ଶ୍ରମିକ ସମସ୍ୟା ଗୁଡିକୁ ସମାଧାନ କରିବା ପାଇଁ ଚେଷ୍ଟା କରିଥାନ୍ତି। ସେତେବେଳେ, ମାଲିକମାନେ ଶ୍ରମ ଆଇନର ବହୁଳତାକୁ ସେମାନଙ୍କ ସମସ୍ୟା ମନେକରିଥାନ୍ତି। ଶ୍ରମ ଆଇନ ଗୁଡିକରେ ବହୁ ଗଳାବାଟ ରହିଛି, ଯେଉଁବାଟରେ ମାଲିକମାନେ ଲାଭବାନ ହୋଇଥାନ୍ତି ଏବଂ ଶ୍ରମିକମାନଙ୍କ ପ୍ରକୃତ ସମସ୍ୟା ସମାଧାନ ହେବା ପରିବର୍ତ୍ତେ ଜଟିଳ ହୋଇଥାଏ। ଶ୍ରମ ବିଭାଗ ମଧ୍ୟ ଆଇନ ଗୁଡିକୁ ଠିକ ଠିକଭାବେ କାର୍ଯ୍ୟକାରୀ କରିନଥାଏ ଏବଂ ମାଲିକମାନେ ମଧ୍ୟ ଶ୍ରମ ଆଇନକୁ ଫାଙ୍କିଥାନ୍ତି। ଏହି ଆଇନ ଗୁଡିକର ପରିସର ମଧ୍ୟ ସୀମିତ।

ବିଶାଳ ସଂଖ୍ୟକ ଶ୍ରମଜୀବୀ ଏହିସବୁ ଆଇନର ପରିସର ଭିତରକୁ ଆସନ୍ତି ନାହିଁ। କେବଳ ଅଳ୍ପ କେତେକ ଶିଳ୍ପସଂସ୍ଥାକୁ ବାଦ ଦେଲେ ଶ୍ରମ ଆଇନ ଗୁଡିକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଏକଚାଟିଆ ଅଧିକାର ପ୍ରୟୋଗ କରିଥାଏ। ଶ୍ରମ ବିଭାଗ ଅଧିକାଂଶତଃ ଏହାର କ୍ଷମତାକୁ ଅପବ୍ୟବହାର କରିଥାଏ ଏବଂ ଦୁର୍ନୀତିରୁ ମଧ୍ୟ ମୁକ୍ତ ନୁହେଁ। ଏହା ନିଜ ଅଧିକାର ବଳରେ କେତେକ ସଂସ୍ଥାକୁ ଆଇନ ପରିସର ବାହାରେ ରଖିଥାଏ। ଏତଦବ୍ୟତୀତ, ବିଭିନ୍ନ ଆଇନରେ ଏପରି କେତେକ ପ୍ରାବଧାନ ରହିଛି, ଯାହାକୁ ମନଇଛା ତର୍ଜମା କରାଯାଇ ପାରିବ। ସେସବୁ ଅନାବଶ୍ୟକଭାବେ ଶ୍ରମ ବିବାଦକୁ ଜଟାଳ କରିଥାଏ। ଆମ ଦେଶର ପ୍ରଥମ ଶ୍ରମ କମିଶନର ସମସ୍ତ ଶ୍ରମ ଆଇନ ଗୁଡିକୁ ଏକକ ଆଇନଭାବେ ପ୍ରସ୍ତୁତ କରିବା ପାଇଁ ସୁପାରିଶ କରିଥିଲା। ବସ୍ତୁତଃ ଏହା ବିଭିନ୍ନ ଆଇନ ଗୁଡିକର ଏକତ୍ରୀକରଣ ବ୍ୟତୀତ ଅନ୍ୟକିଛି ନଥିଲା। ଏଥିରେ କୌଣସି ପ୍ରକାର ଉନ୍ନତ ବିଧିବିଧାନ ଆଡେ ଇଙ୍ଗିତ ନଥିଲା। ଏହିସମସ୍ତ ଦୃଷ୍ଟିରୁ ଟ୍ରେଡ୍ ୟୁନିୟନମାନେ ଏପରି ଏକ ସମନ୍ୱିତ ଶ୍ରମ ଆଇନକୁ ବିରୋଧ କରିଥିଲେ। ବିଶ୍ୱର ବହୁ ଦେଶରେ ଶ୍ରମ ଆଇନ ସଂଖ୍ୟା ଏତେ ଅଧିକ ନୁହେଁ କିନ୍ତୁ ଆଇନ ଗୁଡିକୁ କାଡାକଡିଭାବେ ପାଳନ କରାଯାଇଥାଏ। ଭାରତବର୍ଷରେ କିନ୍ତୁ ଶ୍ରମ ଆଇନ ଗୁଡିକର ସଂଖ୍ୟା ଅନେକ, କାର୍ଯ୍ୟକାରୀତା ଦୃଷ୍ଟିରୁ ସେଗୁଡିକ ଅଧିକାଂଶ କ୍ଷେତ୍ରରେ ବ୍ୟର୍ଥ ଅଟେ। ଶ୍ରମ ଆଇନ ସମ୍ପର୍କରେ ଆଜି ନିର୍ଦ୍ଦିଷ୍ଟଭାବେ ବିସ୍ତାରପୂର୍ବକ ଆଲୋଚନାର ଆବଶ୍ୟକତା ରହିଛି ଏବଂ ସେଗୁଡିକ ମୁଖ୍ୟତଃ ୫ ଟି ଭାଗରେ ବିଭକ୍ତ କରାଯାଇ ପାରିବ –

୧. ମଜୁରି ଓ ଅନ୍ୟାନ୍ୟ ଶ୍ରମ ସର୍ତ୍ତାବଳୀ

୨. ସାମାଜିକ ସୁରକ୍ଷା

୩. ଶିଳ୍ପ ସମ୍ପର୍କ

୪. ଶ୍ରମ କଲ୍ୟାଣ ବ୍ୟବସ୍ଥା

୫. ବୈଷୟିକ (vocational) ତାଲିମ୍ ଓ ନିଯୁକ୍ତି ସୁରକ୍ଷା

ବାସ୍ତବରେ ବ୍ୟାପକ ଭିତ୍ତିକ କୌଣସି ଏକ ଶ୍ରମ ଆଇନର ପ୍ରସ୍ତୁତି ଏବଂ ଏହାର ଯଥାଯଥ କାର୍ଯ୍ୟକାରୀତାକୁ ନେଇ ଆବଶ୍ୟକତା ଅନେକ ଏବଂ ଏହାଫଳରେ ହିଁ ଶ୍ରମିକଶ୍ରେଣୀ ଉପକୃତ ହୋଇପାରିବ। ଆମ ଦେଶରେ ଏପରି ଏକ ଶ୍ରମ ଆଇନର ଆବଶ୍ୟକତା ଏବେ ବି ରହିଛି, ଯେଉଁଠାରେ କୌଣସି ଜଣେ ଶ୍ରମିକ ଆଇନ ପରିସରରୁ ବାଦ ପଡିବେନାହିଁ।

ଆମ ଦେଶର ଟ୍ରେଡ୍ ୟୁନିୟନ ଆନ୍ଦୋଳନ ନିଶ୍ଚିତଭାବେ ବିଷୟଟି ଉପରେ ଗମ୍ଭୀର ଆଲୋଚନା ଭିତରକୁ ପ୍ରବେଶ କରିବା ଦରକାର। ଶ୍ରମିକମାନଙ୍କ କ୍ଷେତ୍ରରେ ଅଧିକ କାର୍ଯ୍ୟକାରୀ ଓ ଉପକାର କଲାଭଳି ଏକ ଶ୍ରମ ଆଇନ ପାଇଁ ନିର୍ଦ୍ଦିଷ୍ଟ ପ୍ରସ୍ତାବ ବିଚାର ପରାମର୍ଶକ୍ରମେ ପ୍ରସ୍ତୁତ ହେବା ଦରକାର। ଟ୍ରେଡ୍ ୟୁନିୟନମାନଙ୍କ ସାମୁହିକ ପ୍ରୟାସ ଫଳରେ ଏହା ସମ୍ଭବପର। ସେତେବେଳେ ଯାଇ ସରକାରଙ୍କୁ ଏପରି ଏକ ପ୍ରଭାବଶାଳୀ ପ୍ରସ୍ତାବ ଉପରେ ନିଷ୍ପତ୍ତି ଗ୍ରହଣ କରିବା ପାଇଁ ବାଧ କରାଯାଇ ପାରିବ। ଏପରି କ୍ଷେତ୍ରରେ ମାଲିକମାନଙ୍କ ପକ୍ଷରୁ ପ୍ରଗତିଶୀଳ ବିଧିବ୍ୟବସ୍ଥା ପ୍ରତି ବିରୋଧ ସ୍ୱାଭାବିକ ଅଟେ କିନ୍ତୁ ଶ୍ରମିକମାନଙ୍କ ଐକ୍ୟବଦ୍ଧ ଚାପ ଏପରି ବିରୋଧକୁ ଅତିକ୍ରମ କରି ଆଗକୁ ଆଗେଇ ଯାଇପାରିବ।

## ସାମାଜିକ ପରିବର୍ତ୍ତନର ହତିଆର

ଆମ ଦେଶରେ ପ୍ରଚଳିତ ସମାଜ ବ୍ୟବସ୍ଥା ଅର୍ଥନୈତିକ ଅସମତା ଓ ରାଜନୈତିକ ପାତର ଅନ୍ତର ଉପରେ ପ୍ରତିଷ୍ଠିତ। ସାମନାରେ ରହିଛି ଏପରି ଏକ ଶାସନ ଯନ୍ତ୍ର ଯାହାକି ଶାସନ ଯନ୍ତ୍ର ଓ ରାଜନୈତିକ ନେତୃତ୍ୱ, ଯାହାକି ଦୁର୍ନୀତିଗ୍ରସ୍ତ ଏବଂ ସେମାନେ ସାମାଜିକ ପ୍ରଗତି ଏବଂ ସମାଜରୁ ଦାରିଦ୍ର୍ୟ ଦୂରୀକରଣକୁ

ବାଧା ଦେଇଥାନ୍ତି । ଏପରି ପରିସ୍ଥିତିରେ ମୁନାଫା ରୋଜଗାର କରୁଥିବା ବଡ ବଡ ବ୍ୟବସାୟ ସଂସ୍ଥାମାନଙ୍କ ସମ୍ପତି ଆକାଶଛୁଆଁ ହେଉଥିବା ବେଳେ, ଦେଶର ଗରିବ ମଣିଷମାନେ ଆତ୍ମହତ୍ୟା କରିଥାନ୍ତି କାରଣ ମଣିଷ ଅବସ୍ଥାରେ ବଞ୍ଚି ରହିବା ସେମାନଙ୍କ ପକ୍ଷରେ କଷ୍ଟକର । ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥା ଶୋଷଣ ଉପରେ ପର୍ଯ୍ୟବେଶିତ ଏବଂ ଦେଶର ଶ୍ରମିକଶ୍ରେଣୀ ସମେତ ଯାବତୀୟ ମେହନତୀ ମଣିଷ ଉକ୍ତ ବ୍ୟବସ୍ଥା ଅଧୀନରେ ଶୋଷିତ ହୋଇଥାନ୍ତି । ଆମ ଦେଶର ଟ୍ରେଡ୍ ୟୁନିୟନ ଅନ୍ଦୋଳନ ଏପରି ଶୋଷଣକୁ ବିରୋଧ କରିଥାଏ । ଏପରି ଅବସ୍ଥାରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ସର୍ବୋପରି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିବାକୁ ପଡିବ । ସେମାନେ ହିଁ ସମାଜରେ ଏପରି ଏକ ପରିବର୍ତ୍ତନକୁ ପ୍ରଗତିଶୀଳ ଓ ମେହନତି ମଣିଷଙ୍କ ସ୍ୱାର୍ଥରକ୍ଷା କରୁଥିବା ବ୍ୟବସ୍ଥା ପାଇଁ ଆଣିପାରିବେ । ଆଜି ଦିନରେ ମୁନାଫା ଅର୍ଜନ, ସେୟାର ବଜାରର ଦଲାଲି ମାର୍କେଟ୍‌କୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ସାଧାରଣ ମଣିଷମାନଙ୍କ ସ୍ୱାର୍ଥ ଏଠାରେ ଜଳାଞ୍ଜଳି ଦିଆଯାଇଥାଏ । ସମାଜର ଆଗଧାଡିରେ ରହିଥିବା ଏକ ଚିକ୍କଣ ସ୍ତରର ଉପଭୋଗ ପିପାସା ଯେଉଁ ଗତିରେ ଆଗକୁ ଧାଉଁଛି ସେହି ଗତିରେ କିନ୍ତୁ ଗରିବ ମଣିଷଙ୍କ ଦାରିଦ୍ର୍ୟତା ଓ ଅସହାୟତାର ବିଲୋପସାଧନ ହେଉନାହିଁ । ଏପରି ପରିସ୍ଥିତିରେ, ଟ୍ରେଡ୍ ୟୁନିୟନର କର୍ତ୍ତବ୍ୟ ସର୍ବାପେକ୍ଷା ଅଧିକ । ସେମାନେ ହିଁ ଗରିବ ମଣିଷଙ୍କ ପାଇଁ ଶୋଷଣ ବିରୁଦ୍ଧରେ ସଂଗ୍ରାମର ଆଗଧାଡିକୁ ଯାଇପାରିବେ । ଏଥିପାଇଁ କିନ୍ତୁ ଟ୍ରେଡ୍ ୟୁନିୟନ ଗୁଡିକ ଅଧିକ ଶକ୍ତିଶାଳୀ ହେବା ଆବଶ୍ୟକ । ସେତେବେଳେ ଯାଇଁ ସେମାନେ ଭାରତବର୍ଷର ମେହନତି ମଣିଷମାନଙ୍କ ପାଇଁ ସେମାନଙ୍କ ଐତିହାସିକ ଭୂମିକା ପାଳନ ପାଇଁ ଅଗ୍ରସର ହୋଇପାରିବେ । ଆଜି "ଭିନ୍ନ ଏକ ବିଶ୍ୱ ସମ୍ଭବପର" – ଏହାଥିଲା ୱାର୍ଲଡ୍ ସୋସାଲ୍ ଫୋରମ୍‌ର ଡାକରା । ଏପରି ଏକ ଭିନ୍ନ ବିଶ୍ୱ ଗଢି ତୋଳିବା ପାଇଁ ଶ୍ରମିକଶ୍ରେଣୀକୁ ହିଁ ଆଗଭର ହେବାକୁ

ପଡିବ। ସମାଜର ସମାଜବାଦୀ ନିର୍ମାଣ ପ୍ରତି ଭାରତବର୍ଷ ସମର୍ପିତ (ସାମ୍ବିଧାନିକଭାବେ) କିନ୍ତୁ ଦେଶକୁ ନେତୃତ୍ୱ ଦେଉଥିବା ଲୋକେ ପୁଞ୍ଜିବାଦୀ ସମାଜ ଗଢୁଛନ୍ତି। ଏହି କାରଣରୁ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ସମାଜବାଦୀ ସମାଜ ନିର୍ମାଣ ମାର୍ଗରେ ଅଗ୍ରସର ହେବାକୁ ପଡିବ। ଏହା ହିଁ ସେ ମାର୍ଗ, ଯେଉଁଠାରେ ଦେଶର ମଣିଷ ସୁଖଶାନ୍ତିରେ ବସବାସ କରିପାରିବେ। ଏକଦା ଭାରତୀୟ ଦର୍ଶନ ମଧ୍ୟ "ସର୍ବେ ସୁଖୀନାଃ ଭବନ୍ତି, ସର୍ବେ ଶାନ୍ତି ନିରାମୟାଃ" – ପାଇଁ ଏହାର ଆବେଗକୁ ବ୍ୟକ୍ତ କରିଥିଲା। ଏପରି ଏକ ସମାଜ ଶୋଷଣର ଉଚ୍ଛେଦକ୍ରମେ ନିର୍ମାଣ କରିବା ସମ୍ଭବପର, ଯେଉଁଠାରେ ମଣିଷ ଉପରେ ମଣିଷର ଶୋଷଣ ଲୋପ ପାଇବ। ଟ୍ରେଡ୍ ୟୁନିୟନର ଭବିଷ୍ୟତ ଏପରି ନବନିର୍ମାଣ ଆଡେ ଅଗ୍ରସର ହେବ, ଏହା ହିଁ ଆମର ବିଶ୍ୱାସ। ଇତିହାସ ଶ୍ରମିକଶ୍ରେଣୀକୁ ଏହି ଦାୟିତ୍ୱ ଅର୍ପଣ କରିଛି। ଆସନ୍ତୁ, ଆମେ ସମସ୍ତେ ମିଳିମିଶି ଏହି ଐତିହାସିକ ଲକ୍ଷ୍ୟ ଆଡେ ଅଗ୍ରସର ହେବା। ❐

## ସି.ଆଇ.ଟି.ୟୁ.ର ମାସିକ

## ମୁଖପତ୍ର

# ଶ୍ରମିକ ଏକତା

## ପାଠ କରନ୍ତୁ

ମାର୍ଚ୍ଚ ୨୦୧୧

ମୂଲ୍ୟ – ୧୦ ଟଙ୍କା

Printed by Lambodar Nayak, President CITU Orissa State Committee, VR-5/1, Unit - III, Kharavela Nagar, Bhubaneswar - 751001, Printed at B.N. Printers, Unit - IV, Madhusudan Nagar, Bhubaneswar